# କାଶୀପୁର ଏକ ସଂଘର୍ଷର କାହାଣୀ

ଅଚ୍ୟୁତ ଦାସ
ବିଦ୍ୟା ଦାସ




an agragamee publication

অগ্রগামী প্রকাশন

# କାଶୀପୁର
# ଏକ ସଂଘର୍ଷର କାହାଣୀ

ଅଚ୍ୟୁତ ଦାସ, ବିଦ୍ୟା ଦାସ

ପ୍ରଫେସର ଅମିତ ଭାଦୁଡ଼ୀଙ୍କ ଦ୍ୱାରା ଲିଖିତ ଭୂମିକା

ପ୍ରଥମ ପ୍ରକାଶନ: ୨୦୦୬

ଅଗ୍ରଗାମୀ ପ୍ରକାଶନ
ଅଗ୍ରଗାମୀ, କାଶୀପୁର
ଜିଲ୍ଲା: ରାୟଗଡ଼ା, ଓଡ଼ିଶା

ସହାୟତା: ନେସ୍‌ନାଲ୍ ଫାଉଣ୍ଡେସନ୍ ଫର୍ ଇଣ୍ଡିଆ, ନୂଆ ଦିଲ୍ଲୀ

ମୁଦ୍ରଣ: ଥାର୍ଡ୍ ଆଇ କମ୍ୟୁନିକେସନସ୍
ଭୁବନେଶ୍ୱର -୭୫୧୦୧୫

ମୂଲ୍ୟ : ୬୪/-

First Published : 2006

Agragamee Publication
Agragamee, Kashipur,
Dist. Rayagada, Orissa.
Pin – 765 015
e-mail: agragamee@satyam.net.in
www.agragamee.org

This publication has been supported by
National Foundation for India, New Delhi

Printed at Third Eye Communications
Bhubaneswar -751 015

# କୃତଜ୍ଞତା

'କାଶୀପୁର ଏକ ସଂଘର୍ଷର କାହାଣୀ' ପ୍ରକାଶିତ ହେବା ପଛରେ ଅନେକଙ୍କ ସହଯୋଗ ଓ ସମର୍ଥନ ରହି ଆସିଛି । ଏମିତି ଗୋଟିଏ ବହିର ଆବଶ୍ୟକତା କଳିଙ୍ଗନଗର ଗୁଳିକାଣ୍ଡ ପରେ ଯଥେଷ୍ଟ ବଢ଼ିଯାଇଥିଲା । ପ୍ରଥମେ ମୁଁ 'The Ecologist Asia' (ଦି ଇକୋଲୋଜିଷ୍ଟ ଏସିଆ) ପତ୍ରିକାର ସମ୍ପାଦକ ଶ୍ରୀ ଆଶିଷ ଫର୍ଣ୍ଣାଣ୍ଡେଜଙ୍କୁ ଆନ୍ତରିକ ଧନ୍ୟବାଦ ଦେବି । କାଶୀପୁର ଜନଆନ୍ଦୋଳନ ପୃଥିବୀର ବିଭିନ୍ନ ଅଞ୍ଚଳରେ ଅନେକ ପାଠକଙ୍କୁ ଆନ୍ଦୋଳିତ କରିଥିଲା । ଓଡ଼ିଆ ସମ୍ବାଦପତ୍ର 'ପର୍ଯ୍ୟବେକ୍ଷକ'ରେ ଏହାର ଅନୁବାଦ ପ୍ରକାଶିତ ହୋଇଥିଲା । ଏହାଛଡ଼ା 'ପର୍ଯ୍ୟବେକ୍ଷକ'ରେ 'କଳିଙ୍ଗନଗର-ଆଖିଦେଖା ହାଲ୍' ଏବଂ 'ଆଦିବାସୀଙ୍କୁ ଆଶ୍ୱାସନା !' ଦୁଇଟି ଲେଖା ସମ୍ପାଦକୀୟ ପୃଷ୍ଠାରେ ସ୍ଥାନ ପାଇଥିଲା । 'ଓଡ଼ିଶା ଭାସ୍କର' ସମ୍ବାଦପତ୍ରରେ 'ଜଗତୀକରଣ ଓ ଗଣହତ୍ୟା' ପ୍ରକାଶିତ ହୋଇଥିଲା । ଏସବୁ ପ୍ରକାଶନ ପାଇଁ 'ପର୍ଯ୍ୟବେକ୍ଷକ' ଓ 'ଓଡ଼ିଶା ଭାସ୍କର'ର ସମ୍ପାଦକଙ୍କ ପାଖରେ ଆମେ କୃତଜ୍ଞତା ଜଣାଉଛୁ । ସେମାନଙ୍କର ସମଭାବାପନ୍ନ ଚିନ୍ତାଧାରା ଆମକୁ ପ୍ରଭାବିତ କରିଛି ।

ପ୍ରଫେସର ଅମିତ୍ ଭାଦୁଡୀ ଏ ସଂକ୍ଷିପ୍ତ ପୁସ୍ତକର ଭୂମିକା ଲେଖିଛନ୍ତି । ଜଣେ ଆକ୍ଟିଭିଷ୍ଟ ପ୍ରଫେସର ଓ ଲେଖକ ହିସାବରେ ପୃଥିବୀର ବିଭିନ୍ନ ପ୍ରାନ୍ତରେ ଚାଲିଥିବା ଆନ୍ଦୋଳନକୁ ସେ ବୁଝିଛନ୍ତି । ତେଣୁ 'କାଶୀପୁର ଏକ ସଂଘର୍ଷର କାହାଣୀ' ବହିଟିର ଭୂମିକା ଲେଖିବା ପାଇଁ ଆମେ ଯେତେବେଳେ ତାଙ୍କୁ ଅନୁରୋଧ କରିଥିଲୁ ସେ ତତ୍‌କ୍ଷଣାତ୍ ସମ୍ମତି ଦେଇଥିଲେ ଓ ସ୍ୱଳ୍ପ ସମୟରେ ଏହା ଲେଖି ଇଟାଲୀରୁ ପଠାଇଥିଲେ । ତାଙ୍କୁ ବହୁତ ଧନ୍ୟବାଦ ଏଥିପାଇଁ । କାଶୀପୁର ଓ କଳିଙ୍ଗନଗର ଉପରେ ସେ ନିଜେ କିଛି ଲେଖିବା ପାଇଁ ମନସ୍ଥ ମଧ୍ୟ କରିଛନ୍ତି ।

ଏ ବହିଟି ପ୍ରଥମେ ଇଂରାଜୀରେ ପ୍ରକାଶିତ ହୋଇଛି । ଓଡ଼ିଆ ସଂସ୍କରଣର ଯଥେଷ୍ଟ ଆବଶ୍ୟକତା ଥିବାରୁ ମୂଳଲେଖାଗୁଡ଼ିକୁ ବନ୍ଧୁ ଶ୍ରୀ ହରିହର ଦାସ ଓ ସହଯୋଗୀ ବନ୍ଧୁ ଶ୍ରୀ ବୀରବର ନାୟକ ଓଡ଼ିଆରେ ଅନୁବାଦ କରିଛନ୍ତି । ବହିଟି ପ୍ରକାଶିତ ହେବାରେ ସେମାନଙ୍କର ଉତ୍ସାହ ଓ ପ୍ରେରଣା ନିଶ୍ଚିତ ରହିଛି । ଉଚ୍ଚକୋଟୀର ଅନୁବାଦ ନିଶ୍ଚିତ ପାଠକମାନଙ୍କୁ ପ୍ରଭାବିତ କରିବ । ଅନୁବାଦକଙ୍କୁ ହାର୍ଦ୍ଦିକ କୃତଜ୍ଞତା ଜଣାଉଛି । ସୁନୀତା ଏ ବହିର ଡିଟିପି କରିଛନ୍ତି, ତାଙ୍କୁ ମଧ୍ୟ ଧନ୍ୟବାଦ ନଦେଇ ରହି ହେଉନାହିଁ । 'ଆର୍ଟ ଆଇ କମ୍ୟୁନିକେସନସ୍' ଏହାର ଡିଜାଇନ୍ ଓ ଛାପିବା ଦାୟିତ୍ୱ ନେଇ ଆମର ବୋଝ ହାଲୁକା କରି ଦେଇଛନ୍ତି । ତାଙ୍କୁ ମଧ୍ୟ ଧନ୍ୟବାଦ ଜଣାଉଛି ।

**ଅଚ୍ୟୁତ ଦାସ**
ଅଗ୍ରଗାମୀ, କାଶୀପୁର

# ବିଷୟ ସୂଚୀ

# ଭୂମିକା

୨୦୦୬ ସାଲ୍ ଯେଉଁ ପ୍ରସଙ୍ଗକୁ ନେଇ ଆରମ୍ଭ ହେଲା ତାହା ଦେଶର ପ୍ରତ୍ୟେକ ନାଗରିକଙ୍କୁ ଲଜ୍ଜା ଆଣିଦେଇଛି । ଜାନୁଆରୀ ୨ ତାରିଖରେ ଓଡ଼ିଶା ପୋଲିସ କଳିଙ୍ଗନଗର ଶିଳ୍ପାଞ୍ଚଳରେ ୧୨ଜଣ ଆଦିବାସୀଙ୍କୁ ଅତି ଜଘନ୍ୟଭାବରେ ହତ୍ୟା କରିଛି । ସେମାନଙ୍କୁ ହତ୍ୟାକରାଯାଇଛି କେବଳ ଏଥିପାଇଁ ଯେ ଟାଟା କମ୍ପାନୀ ପାଇଁ ଅଞ୍ଚଳର ବାସିନ୍ଦା-ଆଦିବାସୀ ଓ ହରିଜନମାନେ କଳିଙ୍ଗନଗର ଶିଳ୍ପାଞ୍ଚଳରେ ସେମାନଙ୍କର ଜମିବାଡି ଓ ଭିଟାମାଟିକୁ ନିର୍ବିରୋଧ ଭାବରେ ଛାଡିନଥିବା କାରଣ ହେତୁ, ଏବଂ ଆଦିବାସୀମାନଙ୍କର ମୌଳିକ ମାନବିକ ଅଧିକାରକୁ ଦୃଷ୍ଟିକୁ ନଆଣି ଟାଟା କମ୍ପାନୀ ଆଦିବାସୀମାନଙ୍କର ଜମିଜମାକୁ ଅକ୍ତିଆର କରିବାକୁ ଚାହିଁଥିଲା । ଏହା ନିଃସନ୍ଦେହ ଭାବରେ କୁହାଯାଇପାରିବ ଯେ ଓଡିଶା ସରକାର ଟାଟା କମ୍ପାନୀ ପ୍ରକଳ୍ପ ନିମନ୍ତେ ପ୍ରପୀଡିତ ଲୋକମାନଙ୍କର ସହମତି ନନେଇ ଜମିଜମା ଅଧିଗ୍ରହଣ

ପାଇଁ ଅନୁମତି ପ୍ରଦାନ କରିଥିଲେ । କିନ୍ତୁ ଘଟଣାର ପରବର୍ତ୍ତି ସମୟରେ ଗଣମାଧ୍ୟମ ଦ୍ୱାରା ପ୍ରଚାରିତ କରାଗଲା ଯେ ଆଦିମ ଆଦିବାସୀମାନେ ବିକାଶର ପଥରୋଧ କରି ଦେଶର ପ୍ରଗତିକୁ ବାଧାପ୍ରାପ୍ତ କରିଛନ୍ତି ।

ଏଇଭଳି ଘଟଣା ଓଡ଼ିଶା ସମେତ ଦେଶର ଅନ୍ୟ ଅଞ୍ଚଳରେ ନିରନ୍ତର ଦେଖାଯାଉଛି । ଏହା ଏକ ପ୍ରକ୍ରିୟାରେ ପରିଣତ ହୋଇଯାଇ ଲୋକମାନଙ୍କୁ ସେମାନଙ୍କ ଜମିଜମାରୁ ବଳପୂର୍ବକ ଉଚ୍ଛେଦ; ସେମାନଙ୍କର ଜୀବନ ଜୀବିକା ଉପରେ ଆଘାତ, ପରିବେଶ ଧ୍ୱଂସ ଘଟଣାଦି ବିକାଶ ଓ ଅର୍ଥନୈତିକ ଉନ୍ନୟନର ଦ୍ୱାହି ଦେଇ ସଂଘଟିତ କରାଯାଉଛି । ଓଡ଼ିଶାର ଘଟଣା ଅଧିକଭାବରେ ମର୍ମନ୍ତୁଦ । କାରଣ ଏକ ନିକମା ଓ ଦୁର୍ନୀତିଗ୍ରସ୍ତ ସରକାର ନିଜର ପରାକାଷ୍ଠା ଅନ୍ୟ କୌଣସି କ୍ଷେତ୍ରରେ ପ୍ରଦର୍ଶନ କରି ନପାରି ବିକାଶ ନାମରେ ନିଜର ହାତକୁ ରକ୍ତରଞ୍ଜିତ କରିଦେଇଛି । ପୁନଶ୍ଚ ଉକ୍ତ ଘଟଣା ଯାହାକୁ କଦାଚିତ ଅସ୍ୱୀକାର କରାଯାଇ ପାରିବ ନାହିଁ ଯେ, ତଥାକଥିତ ପ୍ରଗତି ଓ ବିକାଶ ଧାରାରୁ ମୋଟେ ଲାଭ ପାଉନଥିବା ଗରିବ ଗୁରୁବାମାନେ - ଉନ୍ନୟନ ପ୍ରକଳ୍ପର ବୋଝ ବୋହି ଚାଲିଛନ୍ତି । ବିକାଶର ମନ୍ତ୍ର ଗୁଞ୍ଜନ କରିଚାଲିଛି ଯେ ଯଦି ବିକାଶ ପାଇଁ ମୂଲ୍ୟ ଦେବାକୁ ପଡେ-ଗରିବ ଗୁରୁବାମାନେ ସେଇ ମୂଲ୍ୟକୁ ଦେବାକୁ ପଡିବ । ଏଇଭଳି କାହାଣୀ, ରାଜ୍ୟ ଓ କେନ୍ଦ୍ର ସରକାରଙ୍କର ଜାଣତରେ ସାରାଦେଶରେ ଶୁଣିବାକୁ ମିଳୁଛି ।

ଗରିବଗୁରୁବା ବିରୋଧୀ ଏବଂ କମ୍ପାନୀକୁ ସୁହାଇଲାଭଳି ଉନ୍ନୟନ

ମଡ଼େଲ କାହିଁକି ନିର୍ବାଚିତ ସରକାର ଆପଣେଇ ନେଇଛନ୍ତି ଭଳି ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନ ପଚାରିବାର ସମୟ ଆସି ଯାଇଛି- ସେମାନେ ଅବହେଳିତ, ନିଃସ୍ୱମାନଙ୍କର ଅଧିକାର ପ୍ରତି କାହିଁକି ସଂବେଦନଶୀଳ ନୁହଁନ୍ତି ! ଏହାର ଉତ୍ତରକୁ ମୁଁ ଦୁଇଟି ପର୍ଯ୍ୟାୟରେ ଦେଖୁଛି । ପ୍ରଥମଟି ଏବଂ କ୍ଷମଣୀୟ ପର୍ଯ୍ୟାୟଟି ହେଲା, ଆମେ ଆମର ବୁଦ୍ଧିମତ୍ତାର ଘୋର ଅଭାବ ନେଇ ଗତି କରୁଛେ । ଆମେମାନେ ବିକାଶ ପାଇଁ ମଡେଲକୁ ପାଶ୍ଚାତ୍ୟ ପୁଞ୍ଜିତନ୍ତ୍ରରୁ ବିଶେଷଭାବେ ଆମେରିକୀୟ କର୍ପୋରେଟ ପୁଞ୍ଜିତନ୍ତ୍ର ପାଖରୁ ଉଧାର ଆଣିଛେ । ଏହାର କାରଣ ହେଲା ସମସ୍ୟାକୁ ସାମ୍ନା କରିବା ପାଇଁ  ଆମର ବୌଦ୍ଧିକ ଆତ୍ମପ୍ରତ୍ୟୟ ନାହିଁ । ଅନ୍ୟ କଥାଟିକୁ ମୋଟେ କ୍ଷମା ମାର୍ଜନା କରାଯାଇପାରିବ ନାହିଁ । ଏ ହେଉଛି ବହୁଦେଶୀୟ କମ୍ପାନୀ, ଆଇ.ଏମ୍.ଏଫ, ୱାର୍ଲ୍ଡ ବ୍ୟାଙ୍କ ଭଳି ପୁଞ୍ଜିଲଗାଣ ସଂସ୍ଥା ଏବଂ ଏହି ଅନୁଷ୍ଠାନମାନଙ୍କ ଆଗରେଥିବା ନତଜାନୁ ସରକାରର ଦୁରଭିସନ୍ଧି ମଧୁଚନ୍ଦ୍ରିକା । ଲୋକପ୍ରିୟ ସରକାର ଲୋକମାନଙ୍କ ପ୍ରିୟଭାଜନ ହେବା ପରିବର୍ତ୍ତେ ଉପରୋକ୍ତ ଅନୁଷ୍ଠାନମାନଙ୍କ ପ୍ରତି ଦରଦୀ ହୋଇ ପଡିଛନ୍ତି । ନଚେତ, କଳିଙ୍ଗନଗର ଘଟଣାର କାରଣକୁ ସଠିକ୍ ଭାବରେ ନିର୍ଣ୍ଣୟ କରାଯାଇପାରିବ  ନାହିଁ ।

ଏଇ ସଂକ୍ଷିପ୍ତ ପୁସ୍ତକଟି ଦୁଇ ଜଣ ବେସାଲିସ ଆକ୍ଟିଭିଷ୍ଟ ଦମ୍ପତିଙ୍କର ସଂଗ୍ରାମ କାହାଣୀର ଆଲେଖ୍ୟ ବହନ କରିଛି । ସେମାନେ ବହୁଦେଶୀୟ କମ୍ପାନୀ, ବିଶ୍ୱବ୍ୟାଙ୍କ, ଆନ୍ତର୍ଜାତିକ ମୁଦ୍ରାପାଣ୍ଠି ଓ ନତଜାନୁ ସରକାରର ଅଭିସନ୍ଧିମୂଳକ ମଧୁଚନ୍ଦ୍ରିକା ବିରୁଦ୍ଧରେ ସ୍ୱର ଉତ୍ତୋଳନ କରି ଆଖିଥିବା

ଲୋକମାନଙ୍କର ଆଖିଖୋଲି ଦେଇଛନ୍ତି । ବିକାଶ ନାମରେ ବିନାଶ କିପରି ସର୍ବତ୍ର ଗ୍ରାସି ଯାଇଛି, ତାକୁ ସେମାନେ ସଚେତ ନାଗରିକମାନଙ୍କ ଆଗରେ ଖୋଲି ଦେବା ସହିତ; ଏବକୁ ଚଳଚଞ୍ଚଳ ଥିବା ବିକାଶର ମଡେଲରେ ଯଦି ପରିବର୍ତ୍ତନ ନହୁଏ, ଆଗାମୀ ସମୟ ପାଇଁ କିପରି ତାହା କ୍ଷତିକାରକ ସୂଚେଇ ଦେଇଛନ୍ତି । ଏଇ ପୁସ୍ତକ ଦୁଇଟି ଦିଗରେ ଆମକୁ ପ୍ରସ୍ତୁତ ରହିବା ପାଇଁ ପ୍ରୟାସ କରିଛି । ବିକାଶ ନାମରେ ହେଉଥିବା ଅଘଟଣକୁ ବିରୁଦ୍ଧ କରିବା ସହିତ ହିତାକାଂକ୍ଷୀ ଭବିଷ୍ୟତ ଗଢ଼ି ତୋଳିବା ପାଇଁ ସାହସ ଭରି ଦେବା ପାଇଁ ପ୍ରୟାସ କରିଛି ।

-ପ୍ରଫେସର ଅମିତ୍ ଭାଦୁଡୀ

---

# ପ୍ରାକ୍‌କଥନ

*'ଆମକୁ ଖତମ କରିଦେବା ସେମାନଙ୍କ ପକ୍ଷରେ ସମ୍ଭବ, ଆସନ୍ତା କାଲି କିନ୍ତୁ ଲୋକମାନଙ୍କର' ।*

ସାଲ୍‌ଭାଦୋର ଆଲେନ୍ଦେ, ୧୯୭୩.

*"ଯେପରି ମଣିଷ ଶରୀର ପାଇଁ ହାଡ଼, ଚକ ପାଇଁ ଅଖ, ଚଢ଼େଇ ପାଇଁ ଡ଼େଣା ଏବଂ ଡ଼େଣା ପାଇଁ ପବନ, ସେହିପରି ଜୀବନ ପାଇଁ ସ୍ୱାଧୀନତାର ଆବଶ୍ୟକତା ରହିଛି । ଏହା ବ୍ୟତିରେକେ ଆଉ ଯାହାକିଛି କରାଯାଏ ତାହା ଅଂସପୂର୍ଣ୍ଣ ।"*

ଜୋସେ ମାର୍ଟି, କ୍ୟୁବାର ନେତା

ହକ୍ ସ୍ୱାଧୀନତା ହାସଲ ପାଇଁ ଆଦିବାସୀ କନ୍ଧ ସଂପ୍ରଦାୟ ଇଂରେଜମାନଙ୍କ ବିରୁଦ୍ଧରେ ଯେଉଁ ମୁକ୍ତି ଆନ୍ଦୋଳନ କରିଥିଲେ ତାହା, ଏହାର ଏକ ବଳିଷ୍ଠ ଐତିହାସିକ ଉଦାହରଣ । ଇଂରେଜମାନେ ଅନେକ ରକ୍ତ ରଞ୍ଜିତ ଯୁଦ୍ଧକୁ ପ୍ରଚ୍ଛଦପଟରେ ରଖି ଭାରତକୁ ଆସିଥିଲେ । ସେମାନେ ରକ୍ତପିପାସୁ ଦୁର୍ଦ୍ଧର୍ଷ ତସ୍କର ଥିଲାବେଳେ, କନ୍ଧମାନେ ନିଜସ୍ୱ ଢ଼ଙ୍ଗରେ ଗରିଲା ଯୁଦ୍ଧ କୌଶଳ କିଛି ଶିଖିଥିଲେ- ସେମାନଙ୍କ ଜଙ୍ଗଲସ୍ଥିତ ବସତି ଅଞ୍ଚଳର ରାସ୍ତାଘାଟ ସହିତ ପରିଚିତ ଥିଲେ । ସେମାନେ ଇଂରେଜମାନଙ୍କ ସହିତ ଯୁଦ୍ଧରେ ଅତି ଶକ୍ତ ଭାବରେ ପରାଜିତ ହୋଇଥିଲେ ମଧ୍ୟ ତାର ସ୍ୱାଧୀନତାପ୍ରେମୀ ଜାତି ମୁଖିଆଙ୍କର ଆହ୍ୱାନରେ ବାରମ୍ବାର ସଂଗଠିତ ହୋଇଥିଲେ । ପୁନଶ୍ଚ ଇଂରେଜମାନଙ୍କ ସହିତ ଲଢ଼ି ପ୍ରାଣବଳି ଦେଇ ଶହୀଦ ହୋଇଥିଲେ- ସ୍ୱାଧୀନତା ପାଇଁ ସେଇ ଲୋମହର୍ଷଣକାରୀ ତ୍ୟାଗକୁ ରାଜ୍ୟ ସରକାର ଆନୁଷ୍ଠାନିକ ସ୍ୱୀକୃତି ତ ଦେଲେ ନାହିଁ- ପରନ୍ତୁ ସେମାନଙ୍କୁ ସେମାନଙ୍କର ବାସସ୍ଥାନରୁ ନିକାଲି ଦେବା ପାଇଁ ଉଦ୍ୟମ ଆରମ୍ଭ କଲେ । ଏସବୁ ମରୀଚିକା ପ୍ରାୟ ଦୃଶ୍ୟମାନ ଉନ୍ନୟନ ପାଇଁ ଉଦ୍ଦିଷ୍ଟ ଅଛି ବୋଲି କୁହାଯାଉଛି ।

ନବେ ଦଶକର ଆରମ୍ଭରେ କାଶୀପୁର ଅଞ୍ଚଳର ଆଦିବାସୀମାନେ ସରକାରଙ୍କ ସହିତ ହାତ ମିଳାଇ ଉନ୍ନୟନର ସର୍ବଗ୍ରାସୀ ରାକ୍ଷସ- ବହୁଦେଶୀୟ ଓ ଘରୋଇ ଉଦ୍ୟୋଗରେ ଗଢିଉଠୁଥିବା କାଳକାରଖାନାମାନଙ୍କ ଦ୍ୱାରା ସେମାନେ ଅଚିରେ ବିସ୍ଥାପିତ ହେବାକୁ ଯାଉଛନ୍ତି ବୋଲି ଅବଗତ ଥିଲେ । କଳକାରଖାନା ପାଇଁ ଅଧିଗ୍ରହଣ

କରାଯାଉଥିବା ସେମାନଙ୍କର ପାରମ୍ପରିକ ମାଲିକାନାରେ ଥିବା ଜମି ସହିତ- ଜଳ, ଜଙ୍ଗଲ ଓ ବିସ୍ତର ଅଞ୍ଚଳର ଖଣିଖାଦାନ ସାଙ୍ଗକୁ ଏଠି ଉପଲବ୍ଧ ହେଉଥିବା ଶସ୍ତା ଶ୍ରମକୁ ହାତେଇ ନେଇ ଅଧିକ ମୁନାଫା ଉଠାଇବା ପାଇଁ କାରଖାନା କର୍ତ୍ତୃପକ୍ଷ ଲକ୍ଷ୍ୟ ରଖିଛନ୍ତି । ଏହି ମୁନାଫାଖୋର ଅର୍ଥନୈତିକ କାର୍ଯ୍ୟକ୍ରମକୁ ଆଗେଇନେବା ପାଇଁ ଏ ଅଞ୍ଚଳରେ ରାସ୍ତା ଓ ରେଳ ଯୋଗାଯୋଗ, ବିଜୁଳି ଶକ୍ତି ଉତ୍ପାଦନ ପାଇଁ କଳ କାରଖାନାଗୁଡିକର ଭିତ୍ତିଭୂମି ଗଢି ଉଠିଛି । କ୍ଷେତ୍ର ସ୍ତରରେ ଅନୁଗତ ସରକାର ସବୁ ସହାୟତା ପ୍ରଦାନ ଦିଆକରାଇଛି । ଫଳରେ ବହୁଦେଶୀୟ କମ୍ପାନୀ- ଏହି ଦୁଇ ସ୍ତରରୁ ସାହାଯ୍ୟ ସହଯୋଗ ପାଇ ସେମାନଙ୍କ କାର୍ଯ୍ୟକ୍ରମ ଆରମ୍ଭ କରିଛନ୍ତି । ଏହାକୁ ସାମ୍ନା କରିବା ପାଇଁ ଏହି ଅଞ୍ଚଳରେ ଆଦିବାସୀମାନେ ଉତ୍ତେଜିତ ଓ ପ୍ରତିବାଦ କରିବା ପାଇଁ ଆଗେଇ ଆସିଛନ୍ତି । ଏଇ କ୍ରମବର୍ଦ୍ଧିଷ୍ଣୁ ଆନ୍ଦୋଳନକୁ ଚପାଇ ରଖିବା ପାଇଁ ସରକାର ଓ କମ୍ପାନୀ କର୍ତ୍ତୃପକ୍ଷଙ୍କ ଭିତରେ ଅଲିଖିତ ବୁଝାମଣା ଥିଲା । କମ୍ପାନୀର ମୁନାଫା ପଇସା ମାଧ୍ୟମରେ ପୋଲିସ ସେଇ ଆନ୍ଦୋଳନକୁ ଦବାଇ ଦେବାକୁ ଲାଗିଲା ।

୨୦୦୧ ମସିହା ଜାନୁଆରୀ ମାସରେ କାଶୀପୁର ଅଞ୍ଚଳସ୍ଥିତ ମାଇକଞ୍ଚରେ ପୋଲିସର ଗୁଳିଚାଳନା, ଗୁଳିଚାଳନା ଜନିତ ଆଦିବାସୀ ଆନ୍ଦୋଳନକାରୀଙ୍କ ମୃତ୍ୟୁର କାରଣ ଜାଣିବା ପାଇଁ ନ୍ୟାୟିକ ଆୟୋଗ ଗଠନ କରାଗଲା । ଆୟୋଗ ତିନିବର୍ଷ ପରେ ତାର ଅନୁସନ୍ଧାନ ରିପୋର୍ଟ ଲେଖି ସରକାର ଓ ପୋଲିସ ଉଭୟଙ୍କ ଆଡକୁ ତ୍ରୁଟି ପାଇଁ ଅଙ୍ଗୁଳି ନିର୍ଦ୍ଦେଶ କରିଥିଲେ ।

ଉକ୍ତ ବିଚାର ବିଭାଗୀୟ ଯାଞ୍ଚ ରିପୋର୍ଟର କିୟଦଂଶ ଏହିପରି- "ଏଇ ଘଟଣା ପରିପ୍ରେକ୍ଷୀରେ ପୋଲିସର ଆଭିମୁଖ୍ୟ ଓ କାର୍ଯ୍ୟକଳାପ ସମ୍ପର୍କରେ ଅନେକ ଗୁଡିଏ ପ୍ରଶ୍ନ ମନକୁ ଆସୁଛି । ଯଦି ପୂର୍ବଦିନ ଘଟଣାକୁ ତଦନ୍ତ କରିବା ପାଇଁ ପୋଲିସ ସେଠିକୁ ଯାଇଥିଲେ, ତେବେ ସେଥିପାଇଁ ସଶସ୍ତ୍ର ପୋଲିସ ଫଉଜଙ୍କର ଆବଶ୍ୟକତା କଣ ଥିଲା- ଏ କଥା ମୋତେ ବୁଝାପଡୁନାହିଁ । ପୁନଶ୍ଚ ଏଫ.ଆଇ.ଆରରେ ଦରଜ ହୋଇଥିବା ଜାଗା ଯାହାକୁ କି ପୋଲିସ ତଦନ୍ତ ଆଳରେ ଯାଇ ପାରିବ- ସେ ଜାଗାକୁ ପାର୍ ହୋଇ ପୋଲିସ ଫଉଜ ମାଇକଞ୍ଚରେ ପହଞ୍ଚିବା ମଧ୍ୟ ସେହିପରି ବୁଝାପଡୁନାହିଁ ।

ଏଫ.ଆଇ.ଆର ଅନୁସାରେ ଘଟଣାକୁ ଉସୁକାଉଥିବା ଦୋଷୀମାନଙ୍କୁ ଗ୍ରେପ୍ତାର କରିବା ପାଇଁ ସେମାନେ ଯଦି ଯାଇଥିଲେ- ସେଇ କ୍ଷେତ୍ରରେ ମୁଖ୍ୟ ଅଭିଯୁକ୍ତ ଅଚ୍ୟୁତ ଦାସଙ୍କୁ ଠାବକରି ତାଙ୍କୁ ଘଟଣା ସମ୍ପର୍କରେ ପ୍ରଶ୍ନ ପଚାରି ପାରିଥାନ୍ତେ । ବଡପୋଲିସ ଫଉଜର ଆର୍ବିଭାବ- ମାଇକଞ୍ଚରେ ଥିବା ପ୍ରସ୍ତାବିତ ବଡ ଧରଣର ଜନସମାବେଶ ପାଇଁ ଉଦ୍ଦିଷ୍ଟ ହିଁ ଥିଲା । ସେ ସମ୍ପର୍କରେ ପୋଲିସ ନିକଟରେ ଆଗତୁରା ସୂଚନା ଥିଲା ।

ଏଣୁ ବିରାଟ ପୋଲିସ ଫଉଜ ନେଇ ଗାଁ ଭିତରକୁ ପଶିବା ଆବଶ୍ୟକତା କଣ ମଧ୍ୟ ବୁଝାପଡୁ ନାହିଁ । ତଦନ୍ତ ପ୍ରକ୍ରିୟାରେ ଗ୍ରାମବାସୀମାନେ ଏକାଠି ହୋଇ ପ୍ରତିରୋଧ କରିବାର ସମ୍ଭାବନା ଥିବା ହେତୁ ପୋଲିସ ଫଉଜ ଯାଇଥିଲେ । ସେହିପରି ଯଦି ସୂଚନା ନଥିଲା-

ପୋଲିସର ଯିବା କ'ଣ ବା ଆବଶ୍ୟକତା ଥିଲା । **ସମ୍ଭବତଃ ଆନ୍ଦୋଳନକାରୀଙ୍କୁ ଦବାଇଦେବା ପାଇଁ ଏହା ଉଦ୍ଦିଷ୍ଟ ଥିଲା ।**

'ଏହା ନିଃସନ୍ଦେହ ଭାବରେ ସତ ଯେ ଦୁଇଜଣ ଆଦିବାସୀ ମହିଳାଙ୍କ ଉପରେ ପୋଲିସ କର୍ତ୍ତୃକ ଜୁଲମ ଉତ୍ତେଜନାକୁ ଅଧିକ ପରିମାଣରେ ଉତ୍ତେଜିତ କରିଥିଲା । ପୁଣି ଠିକ୍ ଏଇ ସମୟରେ ପୋଲିସ ଫଉଜ ଯେତେବେଳେ ଫେରି ଆସୁଥିଲେ ସେତେବେଳେ ବିପଦର କୌଣସି ଆଶଙ୍କା ହିଁ ନଥିଲା । ଆଖିଦେଖା ହାଲ୍ ବୟାନ କରୁଥିବା ସାକ୍ଷୀମାନଙ୍କ ମତରେ ଆରମ୍ଭରୁ ଗାଁ ଲୋକଙ୍କ ତରଫରୁ କୌଣସି ହିଂସାକାଣ୍ଡ ହୋଇନଥିଲା । ଦଲିଲଭୁକ୍ତ ହୋଇଥିବା ଠୋସ୍ ରେକର୍ଡରୁ ଜଣାପଡିଛି ଯେ- ଯେଉଁ ଗାଈ ଜଗୁଆଳି ଦେହରେ ବୁଲେଟ ଦାଗ ଅଛି- ସେ ସେତେବେଳେ ଛୋଟ ମୁଣ୍ଡିଆଠାରେ ନଥାଇ ସ୍କୁଲ ପଛପାଖରେ ଗାଈ ଚରାଉଥିଲା । ଏଇ ଯାଗାଟି ରାସ୍ତାର ଡାହାଣକଡରେ ଥିଲା । ସେଇଠି ଗୁଳିଚାଳନାର କୌଣସି ହେତୁ ବି ନଥିଲା । ସଂଖ୍ୟାଧିକ ଆଦିବାସୀମାନଙ୍କର ସାକ୍ଷ୍ୟ ପ୍ରଦାନକାରୀ ବିବୃତିରୁ ଜଣାଯାଇଛି ଯେ- ଅବିଚାରିତ ଭାବରେ ପୋଲିସ ଗୁଳିଚାଳନା କରିଥିଲା । ଯାହାଦ୍ୱାରା କି ତିନିଗୋଟି ଗାଈ ସମେତ ତିନିଜଣ ଆଦିବାସୀ ମରିଥିଲେ । ଏହି ବିବୃତିରେ ଅନେକ ସତ୍ୟତା ଅଛି ବୋଲି ମନେହୁଏ ।

ମୁତୟନ ହୋଇଥିବା ପୋଲିସ ଫଉଜ ଓ କାର୍ଯ୍ୟନିର୍ବାହୀ ମାଜିଷ୍ଟ୍ରେଟଙ୍କ ବିବରଣୀରୁ ଜଣାଯାଏ ଯେ- ପ୍ରଥମେ ଆଦିବାସୀମାନଙ୍କ ତରଫରୁ ଗୁଳିଚାଳନା ଆରମ୍ଭ ହୋଇଥିଲା ଏବଂ ଗୁଳିମାଡରେ କାଶୀପୁର

ଥାନାର ଜିପ୍ କ୍ଷତିଗ୍ରସ୍ତ ହୋଇଥିଲା- ଏ ସମ୍ପର୍କରେ ଗୁଳିଗୋଳା ସମ୍ପର୍କିତ ବିବରଣୀ ନ୍ୟାୟିକ ଆୟୋଗଙ୍କ ନିକଟରେ ଦାଖଲ କରାଯାଇନାହିଁ । ଯାହା ଦ୍ୱାରା କି ପୋଲିସ ଦାବୀର ଯଥାର୍ଥତାକୁ ପରଖ କରାଯାଇ ପାରିବ । ଏଇ ପ୍ରଚ୍ଛଦପଟରେ ଶିଥିଳା ଝୋଡିଆଣି ମନ୍ତବ୍ୟ ମଧ୍ୟ ତଥ୍ୟକୁ ସ୍ପଷ୍ଟ କରୁନାହିଁ ।

ସେହିପରି ଶିଥିଳା ଝୋଡିଆଣିର ଆୟୋଗ ସତ୍ୟପାଠ କରିଆରେ ବିବୃତି- ବିବୃତିରୁ ଓହରି ଆସିବା ଇତ୍ୟାଦି ଘଟଣା ଗ୍ରାମଲୋକମାନଙ୍କର ବନ୍ଧୁକ ସାହାଯ୍ୟରେ ଆକ୍ରମଣ ଘଟଣାକୁ ମଧ୍ୟ ପୁଷ୍ଟି କରୁନାହିଁ ।

ଘଟଣା ସମୟରେ କାର୍ଯ୍ୟକାରୀ ମାଜିଷ୍ଟ୍ରେଟଙ୍କର ଲୁହବୁହା ବାଷ୍ପ, ଲାଠିରେ ପିଟିବା ଏବଂ ଶେଷରେ ଗୁଳି ଚଳାଇବା ଆଗରୁ ମାଇକ୍ରୋଫୋନରେ ଲୋକମାନଙ୍କୁ ସତର୍କ କରି ଦିଆଯାଇଥିବା କଥା ମଧ୍ୟ ସଠିକ ନୁହେଁ । ମାଜିଷ୍ଟ୍ରେଟ ନିଜକଥା ହିଁ ନିଜେ ମଧ୍ୟ ବିରୋଧ କରିଛନ୍ତି ।

ମାଜିଷ୍ଟ୍ରେଟ ଗୁଳିଚାଳନା ପାଇଁ ଆଦେଶ ଦେଇଥିଲେ ମଧ୍ୟ କେତେ ରାଉଣ୍ଡ ଗୁଳି ଚଳାହେଲା ସେ କଥା କାଶୀପୁର ଥାନାବାବୁ ପରିଚାଳନା କରୁଥିଲେ ।

ପି.କେ ମିଶ୍ର ଆୟୋଗ- ତାଙ୍କର ଅନ୍ୟାନ୍ୟ ଉପସଂହାର ଓ ସୁପାରିଶରେ କହିଛନ୍ତି ଯେ- ଅନ୍ଧାଧୁନିଆ ଶିଳ୍ପ ପ୍ରସାରଣ ପାଇଁ ଆମେ ପରିବେଶକୁ ନଷ୍ଟ କରି ପାରିବା ନାହିଁ । ଏହାର ଅର୍ଥ ଏହା ନୁହେଁ ଯେ

ଶିକ୍ଷ ପ୍ରସାରଣ ନହେଉ- ଦୁଇଟି ଅତି ଆବଶ୍ୟକ କାର୍ଯ୍ୟକ୍ରମ ଉପରେ ତାଳମେଳ ରହିବା ଉଚିତ୍ । ଯେପରିକି ଆମ ଭବିଷ୍ୟତ ବଂଶଧରମାନେ ଏଥିରୁ ଲାଭ ପାଇପାରିବେ ।

ରାଜ୍ୟ ସରକାର ଆୟୋଗଙ୍କର ପ୍ରଦତ୍ତ ରିପୋର୍ଟର କିୟଦଂଶକୁ ଅଧିକ ଭାବରେ ଗୁରୁତ୍ୱ ଦେଇ ରାଜ୍ୟର ଦରିଦ୍ରତା ସହିତ ଆଦିବାସୀମାନଙ୍କୁ ମୂଳୋତ୍ପାଟନ କରିବା ପାଇଁ ପଦକ୍ଷେପ ନେଇ ଚାଲିଛନ୍ତି ବୋଲି ମନେହୁଏ- ଏହି ରିପୋର୍ଟ ପ୍ରକାଶ ପାଇ ସାରିଲା ପରେ ଉତ୍କଳ ଆଲୁମିନା ସରକାରଙ୍କ ଦ୍ୱାରା ଅଧିକରୁ ଅଧିକ ପ୍ରୋତ୍ସାହିତ ହୋଇ ତାର କାର୍ଯ୍ୟକ୍ରମକୁ ଅଧିକ ବର୍ବରତା ସହିତ ଆଗେଇ ନେଇ ଯାଉଛି ।

ଆଦିବାସୀମାନଙ୍କର ଜୀବନଜୀବିକାର ପାଥେୟସବୁକୁ ଧ୍ୱଂସ କରିଦେବାର କାର୍ଯ୍ୟକ୍ରମ ପୂରାଦମ୍‌ରେ ରାଜ୍ୟସାରା ଚାଲୁରହିଛି । ୨୦୦୪ ମସିହାରେ ବେଦାନ୍ତ ତାର ଆଲୁମିନା ରିଫାଇନର ପ୍ରକଳ୍ପ ନିୟମଗିରିଭଳି ସର୍ବପୁରାତନ ଜୈବ ବିବିଧତା ଭରପୁର ପାର୍ବତ୍ୟ ଶ୍ରେଣୀରେ ଚାଲୁ କରିଛି । ଆଦିବାସୀ ସଂପ୍ରଦାୟ ଏଇସବୁ ଜାଗା ଭଳି ଟଣା ହୋଇଥିବା ପର୍ବତ ଶ୍ରେଣୀକୁ ତାର ଆରାଧ ରାଜା ବୋଲି ମାନ୍ୟତା ଦେଇ ଆସୁଛି । ଏଇ ଧାର୍ମିକ ସ୍ପର୍ଶକାତର ଅଞ୍ଚଳରେ ରାଜ୍ୟ ସରକାରଙ୍କ ଦ୍ୱାରା ପ୍ରକଳ୍ପ ମଞ୍ଜୁରୀ ନିଷ୍ପତ୍ତିକୁ ଅନେକ ଦିଗରୁ ଚାଲେଞ୍ଜ କରାଯାଇ ପ୍ରଶ୍ନ ମଧ୍ୟ ପଚରା ଯାଇପାରିବ । ସରକାରଙ୍କ ଉକ୍ତ ନିଷ୍ପତ୍ତି ଉପରେ ସି.ଇ.ସିଙ୍କ ରିପୋର୍ଟ ଉଲ୍ଲେଖଯୋଗ୍ୟ । ପରିବେଶ ଆଇନର

ଖୋଲମଖୋଲା ଉଲଂଘନ ସହିତ ଆଦିବାସୀମାନଙ୍କର ମୌଳିକ ଅଧିକାରକୁ କ୍ଷୁର୍ଣ୍ଣ ମଧ କରିଛି ।

ଏଇ ଉକ୍ତି ହେଉଛି ସି.ଇ.ସି (CEC) ରିପୋର୍ଟର ଚୁମ୍ବକରେ ସାଂରାଶ, ମାନ୍ୟବର ସୁପ୍ରିମ କୋର୍ଟ ଘଟଣା ସମ୍ପର୍କରେ ଅଲଗା ରିପୋର୍ଟ ମଗାଇଛନ୍ତି । ରିପୋର୍ଟ ପାଇଲାପରେ କୋର୍ଟ ତାର ଅନ୍ତିମ ଫଏସଲା- ଏ ସମ୍ପର୍କରେ ପ୍ରକାଶ କରିବ ।

ଉତର ଓଡ଼ିଶାର ଜିଲ୍ଲାମାନଙ୍କରେ ସ୍ପଞ୍ଜ ଆଇରନ କାରଖାନା ଛତୁ ଫୁଟିଲା ପରି ତିଆରି ହୋଇଛି । ଏସବୁ କାରଖାନାମାନଙ୍କର ବର୍ଜ୍ୟବସ୍ତୁ ସବୁ ନଦୀ ପାଣି ଦୂଷିତ କରିବାଠାରୁ ଆରମ୍ଭକରି ଚାଷ ଜମିକୁ ବ୍ୟାପକଭାବରେ କୃଷି ଅନୁପଯୋଗୀ କରି ପକାଇଛି । କେବଳ ସୁନ୍ଦରଗଡ଼ ଜିଲ୍ଲାରେ ୬୦ରୁ ଅଧିକ ସ୍ପଞ୍ଜ ଆଇରନ କାରଖାନା ଅଛି । ଏହି କାରଖାନାମାନଙ୍କର ବର୍ଜ୍ୟବସ୍ତୁର ବିଷ ବଳୟ ଭିତରେ ୬୦୦ ଟି ଗ୍ରାମ ରହି ଅଣନିଶ୍ୱାସୀ ହେବାକୁ ଲାଗିଛନ୍ତି । ସେଇ ଏକା କାରଣ ପାଇଁ ମୟୁରଭଞ୍ଜ ଓ କେଉଁଝର ଜିଲ୍ଲାର ଲୋକମାନେ ଉକ୍ତ ବିଷଜ୍ୱାଳା ପ୍ରଭାବର ଶରବ୍ୟ ହୋଇଛନ୍ତି । ଏ ଅଞ୍ଚଳର ନଦୀ ଜଳ ଦୂଷିତ ହୋଇଛି । ଆଦିବାସୀମାନଙ୍କ ଚାଷଜମି ଚାଷ ଅନୁପଯୋଗୀ ପାଲଟି ଯାଇଛି । ଏସବୁ ଅଞ୍ଚଳରେ ଦାନା ବାନ୍ଧୁଥିବା ଆଦିବାସୀଙ୍କ ପ୍ରତିବାଦକୁ ଦବାଇ ଦିଆଯାଉଛି ।

ଏଇ ପୁସ୍ତକ ଛପା ହେବାର ଦୁଇମାସ ଆଗରୁ ଘଟିଯାଇଥିବା କଳିଙ୍ଗନଗର ଗୁଳି ଚାଳନା- ସେଇ ଧାରାବାହିକ କାହାଣୀର ଶେଷ

ପରିଚ୍ଛେଦ । ଆଶା କରାଯାଉଛି ରାଜ୍ୟ ସରକାର ହକ୍ କଥାକୁ ବୁଝି ଆଦିବାସୀମାନଙ୍କ ସହ ବିଚାରବିମର୍ଷ କରିବାକୁ ଆଗେଇ ଆସିବେ ।

ଉନ୍ନୟନ କେବଳ ଉନ୍ନୟନ ପାଇଁ ନହୋଇ ମଣିଷ ମୁହାଁ ହେବା ଦରକାର । ବହୁଦେଶୀୟ କମ୍ପାନୀମାନଙ୍କର ତୀବ୍ର ଲାଭଖୋର ଲକ୍ଷ୍ୟ ପାଇଁ ଆଦିବାସୀମାନଙ୍କ ଜମିଜମା ଅଧିଗ୍ରହଣ ସମ୍ପର୍କରେ ଲମ୍ବା ଦୌଡରେ ଲାଭକ୍ଷତି ଭଳି ବିଷୟ ଆଲୋଚନାରେ ସ୍ଥାନ ପାଇବା ଦରକାର, କିନ୍ତୁ ସେପରି କିଛି ହେବାକୁ ଯିବନାହିଁ । ଥଇଥାନ ଓ ପୁନର୍ବାସ ଆଇନ କେବଳ ପିଠି ଥାପୁଡାଇବା ଭଳି କଥା । ବାସ୍ତବରେ ଉଭବ ହେଉଥିବା ଭୀଷଣ ବିପଦ ସବୁ ମଣିଷ ସହିବା ବାହାର କଥା ହୋଇଥିଲେ ହେଁ ବିସ୍ଥାପନ ସମ୍ପର୍କିତ ଆଇନ କେବଳ ଧର୍ମକୁ ଆଖିଠାର ମାରି ଆଦିବାସୀମାନଙ୍କର କାଳକାଳର ଭୂସମ୍ପତ୍ତିକୁ ସରକାର କମ୍ପାନୀକୁ ଲୁଟି ନେବାରେ ସାହାଯ୍ୟ କରୁଛି ।

ମଧୁର ପୁନର୍ବାସ ଓ କ୍ଷତିପୂରଣର ଉପରଠାଉରିଆ ଆଶ୍ୱାସନା ବାଟରେ ରାଜ୍ୟସରକାର ଅନ୍ୟସବୁ ପ୍ରକଳ୍ପକୁ ମଧ୍ୟ ବସାଇବାକୁ ଯିବେ- ସମ୍ଭବତଃ ଧିରେ ଧିରେ ଆଦିବାସୀ ଜନଜାତିଙ୍କର ଭୂସମ୍ପତ୍ତି କଳକାରଖାନା ପାଇଁ ଉଭେଇଯିବ- ଏହା ସହିତ ଜମିମାଲିକ ଓ ଆଦିବାସୀ ମଧ୍ୟ ।

ଏଇ କ୍ଷୁଦ୍ର ପୁସ୍ତକ ଆଦିବାସୀମାନଙ୍କର କେବଳ ମାତ୍ର ବଞ୍ଚିବା ଟିକକ ପାଇଁ ସେମାନଙ୍କର ସାହସ, ସହନଶକ୍ତି ଆଦିର ଝଲକକୁ ପଞ୍ଜିକରଣ କରିବାପାଇଁ ଗୋଟିଏ ମାତ୍ର ଉଦ୍ୟମ । ଗତ ୫ଶହ ବର୍ଷର ଇତିହାସ ହେଉଛି ଆଦିବାସୀ ସଂପ୍ରଦାୟର ଗଣହତ୍ୟାର ଇତିହାସ ।

ପଶ୍ଚିମା ଉନ୍ନୟନ ତତ୍ତ୍ୱ ହେଉଛି ଏଇ ଗଣହତ୍ୟାର ପ୍ରମୁଖ କାରଣ । ସଂପ୍ରତି ନୂଆ ପଶ୍ଚିମା ତତ୍ତ୍ୱ ଜଗତୀକରଣ ଦ୍ୱାରା ସର୍ବୋତ୍ତମ ଭାବରେ ପ୍ରଭାବିତ ହୋଇପଡି ଆମ ଦେଶର ସରକାର ଆଦିବାସୀକୁଳକୁ ସଂପୂର୍ଣ୍ଣଭାବରେ ସଫା କରିଦେବାକୁ ବସିଛି । ପୁସ୍ତକରେ ସ୍ଥାନୀତ ୪ ଗୋଟି ଲେଖାରେ ଆମ୍ଭମାନଙ୍କର କଷଣ ସହିତ ଏଠି ଆଗରୁ ଥିବା ମଧୁମୟ ବିଶ୍ୱରେ ଯାହାକିଛି ସୁନ୍ଦର ତାକୁ ନଷ୍ଟ କରିଦେବାର ନିରନ୍ତର ପ୍ରକ୍ରିୟା ସମ୍ପର୍କରେ ଆଦିବାସୀମାନଙ୍କର ପ୍ରତିକ୍ରିୟାକୁ ବୁଝିବାକୁ ଚେଷ୍ଟା କରାଯାଇଛି । ଆମେ ଆଶାବାଦୀ ଯେ- ପୁଣି ସମୟ ଆସିବ ଯେତେବେଳେ ପୁରୁଣା ମୂଲ୍ୟବୋଧ ଫେରି ଆସିବ- ଆମେ ଆଦିବାସୀମାନଙ୍କର ହଜିଯାଇଥିବା ଇତିହାସ ଉପରେ ନରହି ମିଳିମିଶି କରି ରହିପାରିବା ?

ବିଦ୍ୟା ଦାସ

---

# ଏକ ସଂଘର୍ଷର କାହାଣୀ-
# କାଶୀପୁର ଖଣିଖାଦାନ ବିରୋଧୀ ଆନ୍ଦୋଳନ

'ବିକାଶ' ବନାମ 'ବିନାଶର ପରିବେଶ' ଶୀର୍ଷକ ଆନ୍ଦୋଳନ ସାରା ବିଶ୍ୱରେ କ୍ରିୟାଶୀଳ ହେଉଛି । ଆମ ଦେଶର ଉନ୍ନୟନ ତତ୍ତ୍ୱ, ଜଗତୀକରଣ ପର ସମୟରେ ଆଦିବାସୀ ଜନଜାତି ସଂପ୍ରଦାୟଙ୍କୁ ଅସନ୍ତୁଳନ ପାରିବେଶିକ ଚାପବଳୟକୁ ନେଇ ଆସିଛି । ଭିନ୍ନ ଭିନ୍ନ ଜାଗାରେ ଆଦିବାସୀ ସଂପ୍ରଦାୟ ତାର ଭିଟାମାଟି ଓ ଜୀବନଜୀବିକାକୁ ଜାବୁଡ଼ିଧରି ରଖିବା ପାଇଁ ସକ୍ରିୟ ଆନ୍ଦୋଳନ ମାଧ୍ୟମରେ ସେମାନଙ୍କର ରୋଷ ପ୍ରକଟିତ କରିଚାଲିଛନ୍ତି । ଓଡ଼ିଶାର ରାୟଗଡ଼ା ଜିଲ୍ଲା ସ୍ଥିତ କାଶୀପୁର ଅଞ୍ଚଳ ଆଦିବାସୀମାନଙ୍କର ଗଣତାନ୍ତିକ ଆନ୍ଦୋଳନ ସାରା ଦେଶରେ ଆଲୋଡନ ଆଣିଛି । ସେହି ଐତିହାସିକ ଆନ୍ଦୋଳନର ସ୍ଫୁଲିଙ୍ଗ ୧୯୯୩ ସାଲରେ ଆନୁଷ୍ଠାନିକ ଭାବରେ ପରିପ୍ରକାଶ ହୋଇଥିଲା, ତାର ପ୍ରଥମ ସାରଥି ଥିଲେ ଏ ଅଞ୍ଚଳର ମହିଳା-ଆଦିବାସୀ ମା ଓ ଭଉଣୀମାନେ ।

କାଶୀପୁର ଅଞ୍ଚଳର ଖଣି ବିରୋଧୀ ସଂଗଠନର ୨୧ ଜଣ ଆଦିବାସୀ ମହିଳା ୧୯୯୩ ମସିହାରେ ତତ୍‌କାଳୀନ ରାଜ୍ୟ ମୁଖ୍ୟମନ୍ତ୍ରୀଙ୍କୁ ସାକ୍ଷାତ୍ କରି ୧୦ଦଫା ଦାବି ସମ୍ବଳିତ ପତ୍ର ପେଶ୍ କରି କାଶୀପୁର ଅଞ୍ଚଳରେ ହସ୍ତକ୍ଷେପ କରିବା ପାଇଁ ଦାବୀ କରିଥିଲେ । ରାୟଗଡ଼ା ଓ କାଶୀପୁର ଅଞ୍ଚଳରେ ଗଢିଉଠୁଥିବା ବଡ଼ବଡ଼ କଳକାରଖାନାଗୁଡ଼ିକ ମୂଳ ଆଦିବାସୀ ବାସିନ୍ଦାମାନଙ୍କୁ ବାସହରା କରାଇ ଦେବାର ଆଶଙ୍କାକୁ ସେମାନେ ସୂଚାଇ ଦେଇଥିଲେ । ସେମାନଙ୍କର ଏପରି ଆଶଙ୍କା ସପକ୍ଷରେ - ଉପର ଇନ୍ଦ୍ରାବତୀ ସେଚପ୍ରକଳ୍ପ ଦ୍ୱାରା ବାସ୍ତୁହରା ଜନଜାତି ସଂପ୍ରଦାୟଙ୍କର ଅସହ୍ୟ ଦୁଃଖ ଯନ୍ତ୍ରଣାକୁ ଜିଅନ୍ତା ନଜିର ଭାବରେ ଉପସ୍ଥାପନ କରିଥିଲେ ।

"ସେମାନେ କ୍ଷତିପୂରଣ ବାବଦକୁ ପଇସା ନେଇଛନ୍ତି - ନୁହେଁ କି" ? ମୁଖ୍ୟମନ୍ତ୍ରୀ ଭେଟିଥିବା ମହିଳାମାନଙ୍କୁ ତତ୍‌କ୍ଷଣାତ୍ ଉତ୍ତର ଏକରକମ ଫୋପାଡ଼ି ଦେଇଥିଲେ । ସେଇଠି ଆଲୋଚନା ସରିଯାଇଥିଲା ।

ରାୟଗଡ଼ା - କାଶୀପୁରର ପାହାଡ଼ି ଅଞ୍ଚଳରେ କମ୍ ପରିମାଣର ସିଲକନ୍ ଥିବା ଅତି ଉତ୍କୃଷ୍ଟ ବକ୍‌ସାଇଟ୍ ଖଣିଜ ପଥର ଗଚ୍ଛିତ ଥିବା ହେତୁ ଏବଂ କମ୍ ଖର୍ଚ୍ଚରେ ଭଲ ବକ୍‌ସାଇଟ୍ ମିଳୁଥିବା କାରଣରୁ ଆନ୍ତର୍ଜାତିକ ସ୍ତରରେ ଏହି ଅଞ୍ଚଳ ପ୍ରତି ଆକର୍ଷଣ ଅଛି । କାଶୀପୁରର ଉତ୍ତର ପଶ୍ଚିମ ସୀମା ଆଡ଼କୁ ଲାଗି ରହିଥିବା ବାଫଲିମାଳି ବକ୍‌ସାଇଟ୍ ଭଣ୍ଡାର ଏହି ପୂର୍ବତଟ ଗଚ୍ଛିତ ବକ୍‌ସାଇଟ୍ ଭଣ୍ଡାର ଏହାର ଅଂଶ ବିଶେଷ । ଏହି ଠାରେ ହିଁ ଖଣି ବିରୋଧୀ ଆନ୍ଦୋଳନ ଦାନା ବାନ୍ଧି ଧିରେ ଧିରେ ସକ୍ରିୟ ହେଉଛି । ଏଠାରେ ଥିବା ଗଚ୍ଛିତ ବକ୍‌ସାଇଟ୍‌କୁ ଉତ୍କଳ ଆଲୁମିନା ପ୍ରକଳ୍ପ ପାଇଁ ଚିହ୍ନଟ

କରାଯାଇଅଛି । ବାର୍ଷିକ ହାରାହାରି ଏକ ମିଲିଅନ୍ ଟନ୍ ବକ୍ସାଇଟ୍ ଏଠୁ ଉତ୍ତୋଳନ କରାଗଲେ - ହାରାହାରି ୬୦ ବର୍ଷ ପାଇଁ ଏଠୁ କଞ୍ଚାମାଲ ମିଳିବ ବୋଲି ଅଟକଳ କରାଯାଇଛି । ସେହିପରି ଉକ୍ତ ଅଞ୍ଚଳର ପାଖାପାଖି କୋଡ଼ିଙ୍ଗମାଳି ଓ ଶାଶୁ ବୋହୂମାଳି ଅଞ୍ଚଳରେ ସେହି ଏକା ପରି ଉତ୍କୃଷ୍ଟ ବକ୍ସାଇଟ୍ ପଥର ଗଚ୍ଛିତ ରହି ୬୦ ବର୍ଷ ଯାଏଁ ବକ୍ସାଇଟ୍ ପଥର ଯୋଗାଇ ଦେଇ ପାରିବ ବୋଲି ମଧ୍ୟ ଅଟକଳ ଅଛି । ଉତ୍କଳ ଆଲୁମିନା ପ୍ରକଳ୍ପ ପାଇଁ ଏହି ସୁଲଭ ଦରରେ ମିଳୁଥିବା ଉତ୍କୃଷ୍ଟ ଧରଣର ପଥର ଏକ ବୋନାଜା ବୋଲି କୁହାଯାଉଛି ।

ଆଗରୁ ୧ ୯ ୯ ୨ ସାଲରେ ଓଡ଼ିଶା ଖଣିନିଗମ ସହିତ ଇଣ୍ଡାଲ କମ୍ପାନୀ ଏକ ଚୁକ୍ତି ସାକ୍ଷର କରିଥିଲା । ପରେ ଏହି ଅଞ୍ଚଳରେ ଶତ ପ୍ରତିଶତ ରପ୍ତାନିଭିତ୍ତିକ ଆଲୁମିନା ଇଉନିଟ୍ ଫାକ୍ଟ୍ରି ସ୍ଥାପନ କରିବା ପାଇଁ ସରକାରଙ୍କ ସହିତ ଯୋଗାଯୋଗ କରିଥିଲା । ନରୱେର ନରସକୋ ହାଇଡ୍ରୋ, କାନାଡ଼ାର ଆଲକାନ୍ ଭଳି ଆନ୍ତର୍ଜାତିକ ଆଲୁମିନିଅମ୍ ଶିଳ୍ପ ସଂସ୍ଥାମାନେ ଏଠାରେ ନିଜର ଅଂଶଧନ ଖଟେଇବା ପାଇଁ ଆଗ୍ରହ ପ୍ରକାଶ କଲେ ଏବଂ ଆନ୍ତର୍ଜାତିକ ଉତ୍କଳ ଆଲୁମିନିଅମ୍ କମ୍ପାନୀ ଜନ୍ମ ଲାଭ କଲା । ୧ ୯ ୯ ୩ ମସିହାରେ ଟିସ୍କୋ ଏହି ଗ୍ରୁପ ସହିତ ଯୋଗଦେଲା କିନ୍ତୁ ପରେ ଓହରି ଆସିଲା । ୨ ୦ ୦ ୧ ମସିହାରେ ନରସକୋ ହାଇଡ୍ରୋ ଏହି ଯୌଥ ଉଦ୍ୟମରୁ ଓହରି ଗଲା । ବର୍ତ୍ତମାନ ଉତ୍କଳ ଆଲୁମିନା କମ୍ପାନୀରେ ଦୁଇଟି ଅଂଶୀଦାର ରହିଛନ୍ତି । ଏଥିରେ ଇନ୍ଦାଲର ୫ ୫ ପ୍ରତିଶତ ଅଂଶ ଥିଲାବେଳେ ଆଲକାନ୍‌ର ୪ ୫ ପ୍ରତିଶତ ଅଂଶ ରହିଛି ।

ଏହି ସମୟରେ ଉତ୍କଳ ଆଲୁମିନା ଭଳି, ଲାରସନ୍ ଏବଂ ଟୁବ୍ରୋ-ଆଲ୍‌କୋଆ ସହିତ ମିଶି କୁଟ୍ରୁମାମାଳି ପାହାଡ଼ ଅଞ୍ଚଳରେ ଖଣିକାର୍ଯ୍ୟ କରିବା ପାଇଁ ଯୌଥ ଉଦ୍ୟୋଗ ପ୍ରତିଷ୍ଠା କରିଥିଲେ । ଏହି କୁଟ୍ରୁମାମାଳି ଓ ବାଫଲିମାଳି ଉଭୟ ଅଞ୍ଚଳ କାଶୀପୁରର ଉତ୍ତର ପଶ୍ଚିମ ସୀମାକୁ ଲାଗି ରହିଛି ।

ମୁଖ୍ୟମନ୍ତ୍ରୀଙ୍କର ୧୯୯୩ ମସିହାର ନକରାତ୍ମକ ପ୍ରତିକ୍ରିୟା କାଶୀପୁରର ଆଦିବାସୀମାନଙ୍କୁ ଦବେଇ ପାରିନଥିଲା । ବହୁଦେଶୀୟ କମ୍ପାନୀମାନଙ୍କର ବଜାର ଅର୍ଥନୀତିର ଷଣ୍ଢୁଆସୀ ଆକ୍ରମଣକୁ ସାମନା କରିବା ପାଇଁ ଏଠାକାର ବାସିନ୍ଦାମାନେ ପ୍ରଶାସନକଳକୁ ଆଇନସମ୍ମତ ଦରଖାସ୍ତ, ଫେରାଦି ଅଭିଯୋଗମାନ କରିବା ଆରମ୍ଭ କଲେ । ସେମାନେ ରାସ୍ତାରୋକ, ସଭାସମିତି ଜରିଆରେ ବିକ୍ଷୋଭମାନ ଆୟୋଜନ କରିବାକୁ ଆରମ୍ଭ କଲେ । ବିକ୍ଷୋଭ ପ୍ରଦର୍ଶନ ସମୟରେ ସେମାନେ ଯେଉଁ କଥା ଗୁଡିକ ଉଠାଇଥିଲେ ସେଗୁଡିକ ହେଉଛି :-

- ସାଧାରଣ ସ୍ୱାର୍ଥ ଆଳରେ ଯେଉଁ ଜମିଜମା ଅଧିଗ୍ରହଣ ହେଉଛି ତାହା ଆଦିବାସୀ ସ୍ୱାର୍ଥର ଅନୁକୂଳ ନୁହେଁ । ଅଣଆଦିବାସୀମାନଙ୍କର ଆଦିବାସୀ ଅଞ୍ଚଳକୁ ଯେଉଁ ଅନୁପ୍ରବେଶ ଲାଗିରହିଛି- ତାହା ସମ୍ବିଧାନସୂଚିତ ଅନୁସୂଚିତ ଅଞ୍ଚଳର ସ୍ଥିତାବସ୍ଥାକୁ ଓଲଟପାଲଟ କରି ଦେଉଛି ।
- ଆଦିବାସୀ ସଂପ୍ରଦାୟର ନିଜସ୍ୱ ସଂସ୍କୃତି ପରିଚୟ ଏବଂ ସେମାନଙ୍କର ସାମାଜିକ ଓ ଅର୍ଥନୈତିକ ଭିତ୍ତିଭୂମି ପ୍ରଭାବିତ ହେଉଛି ।

- ଅଞ୍ଚଳର ପ୍ରକଳ୍ପ ପ୍ରପୀଡ଼ିତ ଲୋକମାନଙ୍କୁ କୌଣସି କଥାରେ ପଚରା ନଯାଇ ନିଷ୍ପତ୍ତିକୁ ସେମାନଙ୍କ ଉପରେ ଲଦି ଦିଆଯାଉଛି ।

ଏହି ଅଞ୍ଚଳରେ କାର୍ଯ୍ୟରତ ତିନିଗୋଟି ପ୍ରମୁଖ ସ୍ୱେଚ୍ଛାସେବୀ ସଂଗଠନ ବହୁଦେଶୀୟ କମ୍ପାନୀମାନଙ୍କୁ ସାମ୍ନା କରିବା ପାଇଁ ଅଞ୍ଚଳର ଲୋକମାନଙ୍କୁ ନେଇ ସାମ୍ମୁଖ୍ୟଟିଏ ତିଆରି କରି ଖଣିବିରୋଧୀ ଆନ୍ଦୋଳନର ଅୟମାରମ୍ଭ କଲେ । ଏହି ବାଫଲିମାଳି ସୁରକ୍ଷା ପରିଷଦ, ପ୍ରାକୃତିକ ସଂପଦ ସୁରକ୍ଷା ପରିଷଦ ଏବଂ ଆଞ୍ଚଳିକ ସୁରକ୍ଷା ପରିଷଦ ସହିତ କାଶୀପୁର ବ୍ଲକର ତୃଣମୂଳ ସ୍ତରରେ ଗଢିଉଠିଥିବା ଅନ୍ୟ ଅନୁଷ୍ଠାନମାନ ପର୍ଯ୍ୟାୟ କ୍ରମରେ ସାମିଲ ହୋଇପଡିଲେ । ଖଣି ଅଞ୍ଚଳର ତୃଣମୂଳ ସ୍ତରରେ ଗାଁଟି ସୁରକ୍ଷା ପରିଷଦ ଉତ୍କଳ ଆଲୁମିନା ବିରୁଦ୍ଧରେ ସ୍ୱର ଉଠାଇଥିଲା ବେଳେ ବନରକ୍ଷା ସୁରକ୍ଷା ପରିଷଦ, ବସୁନ୍ଧରା ସୁରକ୍ଷା ପରିଷଦ, ଶାଶୁବୋହୂମାଳି ସୁରକ୍ଷା ପରିଷଦ ଯଥାକ୍ରମେ ଆଦିତ୍ୟ ବିରଲା ଗ୍ରୁପ ଓ ଷ୍ଟେରଲାଇଟ୍ ବିରୁଦ୍ଧରେ ସେମାନଙ୍କର ସ୍ୱରକୁ ଯୋରଦାର କରିବାକୁ ଲାଗିଲେ । ଆରମ୍ଭରୁ ଏହି ସ୍ୱେଚ୍ଛାସେବୀ ସଂଗଠନ ଗୁଡିକ ଅନେକ ପ୍ରଭାବ ପକାଇ ପାରିଥିଲେ । ପରେ ସେମାନଙ୍କୁ କମ୍ପାନୀମାନଙ୍କର ମିଳିତ ପ୍ରତିଆକ୍ରମଣର ସାମ୍ନା କରିବାକୁ ପଡିଥିଲା ।

ସ୍ୱେଚ୍ଛାସେବୀ ସଂଗଠନମାନଙ୍କର ମିଳିତ ସାମ୍ମୁଖ୍ୟ ନିଜକୁ ସଶକ୍ତ କରିବା ପାଇଁ ଜାତୀୟ ସ୍ତରର ଅନୁଷ୍ଠାନମାନଙ୍କ ସହିତ ଯୋଗସୂତ୍ର ସ୍ଥାପନକରି ସେମାନଙ୍କର ଖଣିବିରୋଧୀ ଆନ୍ଦୋଳନ ଗଣତାନ୍ତ୍ରିକ ପ୍ରଣାଳୀରେ ଆଗେଇ ନେଲା ବାଟରେ ପ୍ରକଳ୍ପ ପ୍ରତିଷ୍ଠା କରିଥିବା କମ୍ପାନୀମାନଙ୍କର ରୋଷର ନିରନ୍ତର ଶିକାର ହେବାକୁ ଲାଗିଲେ । କମ୍ପାନୀ କର୍ତ୍ତୃପକ୍ଷ ତେଜି ଉଠୁଥିବା

ଆନ୍ଦୋଳନକୁ ଭଣ୍ଡୁର କରିବା ପାଇଁ ସେହି ଅଞ୍ଚଳର ସୁବିଧାବାଦୀ - ଉଦ୍ଭ୍ରାନ୍ତ ଯୁବକମାନଙ୍କୁ ସାମୟିକ ସୁବିଧା ପ୍ରଦାନ କରି ଆନ୍ଦୋଳନ ବିରୁଦ୍ଧରେ ନିୟୋଜିତ କରିବାକୁ ଲାଗିଲେ । ଆନ୍ଦୋଳନକାରୀ ଗୋଷ୍ଠୀ ଏବଂ ଆନ୍ଦୋଳନକୁ ଭଣ୍ଡୁର କରିବା ଗୋଷ୍ଠୀମାନଙ୍କ ଭିତରେ ଲାଗିରହିଥିବା ଶିଥିଳ ଯୁଦ୍ଧ ହଠାତ୍ ନିଆଁ ପାଲଟି ଗଲା ଯେତେବେଳେ ନବରଙ୍ଗପୁର ଅଞ୍ଚଳର କିଛି ଚାଷୀଭାଇ କାଶୀପୁର ଅଞ୍ଚଳରେ ଗଢିଉଠିଥିବା ଜଳଛାୟା ପ୍ରକଳ୍ପକୁ ଦେଖିବା ପାଇଁ ଆସିଥିଲେ । ଏହି ଜଳଛାୟା ପ୍ରକଳ୍ପ ଗୁଡିକ ଅଗ୍ରଗାମୀ ସଂସ୍ଥା ଦ୍ୱାରା ସଂଗଠିତ କରାଯାଇଥିଲା । ବୁଲି ଆସିଥିବା ଚାଷୀଭାଇ ଏବଂ ସେମାନଙ୍କୁ ପ୍ରକଳ୍ପ ବୁଲାଇବା ଦାୟିତ୍ୱରେ ଥିବା ଅଗ୍ରଗାମୀ ସ୍ୱେଚ୍ଛାସେବୀମାନଙ୍କୁ ଆକ୍ରମଣ କରାଯାଇଥିଲା । ଏ ସଂପର୍କରେ ବିଧିବଦ୍ଧ ଭାବରେ ଏଫ.ଆଇ. ଆର୍ ଦରଜ କରାଯାଇଥିବା ସତ୍ତ୍ୱେ ଦୋଷୀମାନଙ୍କୁ ଆରେଷ୍ଟ କରାଗଲା ନାହିଁ । ସେମାନଙ୍କୁ ଘଣ୍ଟ ଘୋଡାଗଲା । ଏହାଦ୍ୱାରା ସମାଜବିରୋଧୀ ଲୋକ ଅଧିକରୁ ଅଧିକ ସମାଜବିରୋଧୀ କାର୍ଯ୍ୟକରିବା ପାଇଁ ଉତ୍ସାହିତ ହେଲେ, ଫଳ ଏଇଆ ହେଲା- ପାଖାପାଖି ଅଞ୍ଚଳର ଝିଅ ବୋହୂମାନେ ସ୍ନାନ, ଶୌଚାଦି ପାଇଁ ଘରୁ ବାହାରି ପାରିଲେ ନାହିଁ । ଏହି ଅଞ୍ଚଳର ବାସିନ୍ଦାମାନେ ଉତ୍କ୍ଷିପ୍ତ ହେଲେ ସତ କିନ୍ତୁ ଅନ୍ଧାକାନୁନ୍ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବାକୁ ଆଶଙ୍କା ପ୍ରକାଶ କଲେ । ଧର୍ମକୁ ଆଖିଠାର ଭଳି ଦୁଇପକ୍ଷ ଲୋକମାନଙ୍କ ବିରୁଦ୍ଧରେ କେଶ୍‌ମାନ ରୁଜୁ କରାଯାଇଥିଲା; କିନ୍ତୁ ଅଗ୍ରଗାମୀ ସ୍ୱେଚ୍ଛାସେବୀମାନଙ୍କୁ ଏକତରଫା ଭାବରେ ନିର୍ଯାତନାର ଅଧିକଭାଗ ଭୋଗ କରିବାକୁ ପଡିଲା ।

୧୯୯୭ ମସିହାରେ ଦୁଇପକ୍ଷ ଭିତରେ ଅନେକ ଗୁଡିଏ ସଂଘର୍ଷର ସୂତ୍ରପାତ ହୋଇଥିଲା । ଏହି ସଂଘର୍ଷର ପରିଣତି ହିସାବରେ ଅଗ୍ରଗାମୀର ରାୟଗଡ଼ା ଜିଲ୍ଲା ସ୍ଥିତ ସୁଙ୍ଗେର ପଞ୍ଚାୟତ କାର୍ଯ୍ୟାଳୟ ଏବଂ କଳାହାଣ୍ଡି ଜିଲ୍ଲାସ୍ଥିତ ଥୁଆମୂଳ ରାମପୁର ଅଫିସକୁ ଖଣି ସପକ୍ଷବାଦୀ ଗୋଷ୍ଠୀ ଭାଙ୍ଗି ଧ୍ୱସ୍ତବିଧ୍ୱସ୍ତ କରିପକାଇଥିଲେ । ସେମାନଙ୍କର ଏହି ଜଘନ୍ୟ କାର୍ଯ୍ୟକଳାପରୁ ଲାରସନ୍ ଏବଂ ଟୁବ୍ରର ସୁଙ୍ଗେର ଅଫିସ ମଧ ରକ୍ଷା ପାଇପାରି ନଥିଲା । ତାପରେ ଖଣିବିରୋଧୀ ଲୋକମାନଙ୍କ ବିରୁଦ୍ଧରେ ଏକତରଫା ଦମନଲୀଳା ଆରମ୍ଭ ହୋଇଗଲା । ଅନ୍ଧାଧୁନିଆଭାବରେ ଆଖପାଖ ଗାଁର ନିରୀହ ଲୋକମାନଙ୍କୁ ରାତି ଅଧିଆ ଗିରଫ କରାଗଲା । ଜୀବନ ଜୀବିକା ପାଇଁ ହାଟକୁ ଆସିଥିବା ଲୋକକୁ ବାନ୍ଧି ନିଆଗଲା । ଶେଷରେ, ୧୯୯୮ ମସିହାରେ ରାଜ୍ୟସରକାର ଅଗ୍ରଗାମୀକୁ ବେଆଇନ ଘୋଷଣା କଲେ । ଜିଲ୍ଲା ପ୍ରଶାସନକୁ ବିଧିବଦ୍ଧ ଭାବରେ ଚିଠି ଲେଖି ଅଗ୍ରଗାମୀ ଅନୁଷ୍ଠାନକୁ କୌଣସି ପ୍ରକାରରେ ସାହାଯ୍ୟ କରିବା ପାଇଁ ବାରଣ କଲେ । 'ଅଗ୍ରଗାମୀ'ର ସ୍ୱେଚ୍ଛାସେବକମାନଙ୍କୁ ମିଛ ମାଲିମୋକଦ୍ଦମାରେ ଯୋଡାଯାଇ ସେମାନଙ୍କର ମନୋବଳକୁ ଭାଙ୍ଗିଦେବା ପାଇଁ ଉଦ୍ୟମ ଆରମ୍ଭ କରାଗଲା ।

ଆଉ ଏକ ସଂଘର୍ଷ ପର୍ଯ୍ୟାୟରେ କୁଚେଇପଦର ଗ୍ରାମପଞ୍ଚାୟତର ମହିଳାମାନେ ଉତ୍କଳ ଆଲୁମିନିଅମ୍ ବିରୁଦ୍ଧରେ ସ୍ୱରଉତ୍ତୋଳନ କରି ନର୍ସକୋ ହାଇଡ୍ରୋ ଅଧିକାରୀମାନଙ୍କର ତାଙ୍କ ଅଞ୍ଚଳକୁ ଗସ୍ତ କରିବା ବିରୁଦ୍ଧରେ ରାସ୍ତାରୋକ ଆନ୍ଦୋଳନ ଚଳାଇଲେ । ଏହାପରେ ଯେଉଁ ପୋଲିସ କେଶ୍‌ମାନ ରୁଜୁ କରଗଲା ସେଥିରେ ଏ ଅଞ୍ଚଳରେ ସଂଖ୍ୟାଧିକ

ଲୋକମାନଙ୍କ ସହିତ ଅଗ୍ରଗାମୀର ଆଠଜଣ ସ୍ୱେଚ୍ଛାସେବୀମାନଙ୍କୁ ବାନ୍ଧି ନିଆଗଲା, କିନ୍ତୁ ଆନ୍ଦୋଳନ କମ୍‌ଯୋର ହେଲା ନାହିଁ । କମ୍ପାନୀ କର୍ମଚାରୀମାନେ ଉକ୍ତ ଜାଗାକୁ ପ୍ରବେଶ କରି ପାରିଲେ ନାହିଁ । ସବୁଠାରୁ ଆଶ୍ଚର୍ଯ୍ୟ କଥା ରାଜ୍ୟ ସରକାର ହୁଅନ୍ତୁ ବା କମ୍ପାନୀ କର୍ମଚାରୀ ହୁଅନ୍ତୁ କେହି କେବେ ଏହି ଅଞ୍ଚଳର ବାସିନ୍ଦାମାନଙ୍କ ସହିତ ଯୋଗାଯୋଗ ରକ୍ଷାକରି ଆଲୁମିନିଅମ୍ ପ୍ରକଳ୍ପର ପ୍ରସ୍ତାବିତ ସୁଫଳ କ'ଣ ସବୁ ବୁଝାଇଲେ ନାହିଁ । କିନ୍ତୁ ସରକାର ଏହି ଅଞ୍ଚଳରେ କ୍ରିୟାଶୀଳ ହେଉଥିବା ଗଣତାନ୍ତିକ ଆନ୍ଦୋଳନକୁ ଚପେଇ ଦେବା ପାଇଁ ପୋଲିସ ଫୋର୍ସ ଅଧିକରୁ ଅଧିକ ମୁତୟନ କରିବାକୁ ଆରମ୍ଭ କଲେ । ଏହି ଅଞ୍ଚଳରେ କମ୍ପାନୀକୁ ସୁରକ୍ଷା ଦେବା ପାଇଁ ଠିକଣା ଜାଗାରେ ପୋଲିସ ଫାଂଣ୍ଡି ଖୋଲିବା ପାଇଁ ମଧ୍ୟ ମନସ୍ଥ କଲେ ।

କାଶୀପୁର ଅଞ୍ଚଳର ଘଟଣାକୁ ପ୍ରଘଟ ନକରି ଦେବାର ସବୁ ଉଦ୍ୟମ ସତ୍ତ୍ୱେ ଘଟଣା ଦେଶ ସାରା ପ୍ରଚାରିତ ହେବାକୁ ଲାଗିଲା । ଗଣମାଧ୍ୟମ ଗୁଡିକ କମ୍ପାନୀମାନଙ୍କର ଚାପ ସତ୍ତ୍ୱେ ସମସ୍ୟାର ଦୁଇ ପାର୍ଶ୍ୱକୁ ଗଭୀର ଅନୁଧ୍ୟାନ କରି ସଂବାଦ ପରିବେଷଣ କରିବାକୁ ଲାଗିଲେ । ଅନ୍ୟ ସଂସ୍ଥାମାନେ କାଶୀପୁର ସମସ୍ୟା ସହିତ ଯୋଡ଼ିହୋଇ ଏହାକୁ ଅଧିକରୁ ଅଧିକ ସଶକ୍ତ କରିବା ପାଇଁ ଆଗେଇ ଆସିଲେ । ମାନିବିକ ଅଧିକାର ପାଇଁ କାମ କରୁଥିବା ବ୍ୟକ୍ତି ବିଶେଷ ଏ ସଂପର୍କରେ ରାଜ୍ୟ ମୁଖ୍ୟମନ୍ତ୍ରୀଙ୍କ ସହିତ ଆଲୋଚନା କରି ଅନ୍ୟାୟଭାବରେ ଲଦି ଦିଆଯାଇଥିବା ମାଲିମୋକଦ୍ଦମାଗୁଡିକ ହଟାଇବା ପାଇଁ ଜୋରଦେବା ଆରମ୍ଭ କଲେ ଏବଂ ଏହା ସହିତ ଗଢିଉଠୁଥିବା ପ୍ରକଳ୍ପ

ଗୁଡିକର ପାରିପାର୍ଶ୍ୱିକ ଅବସ୍ଥାର ପ୍ରଭାବ ଗୁଡିକ ସବୁ କଣ - ଏ ସମ୍ପର୍କରେ ଜାଣିବା ପାଇଁ ଗୋଟାଏ ସ୍ୱାଧୀନ ସଂସ୍ଥା ଅନୁଧାନ କରିବା ପାଇଁ ମଧ ଦାବୀ ଆରମ୍ଭ କଲେ । ଆଗରୁ କମ୍ପାନୀ କର୍ତ୍ତୃପକ୍ଷଙ୍କ ଦ୍ୱାରା ପ୍ରସ୍ତୁତ ପରିବେଶ ପ୍ରଭାବ ରିପୋର୍ଟଗୁଡିକୁ ଜାଣିଶୁଣି ଲୁଚାଇ ରଖାଯାଇଥିଲା । ୧୯୯୯ ମସିହାରେ ମୁଚୁକୁନ୍ଦ ଦୁବେ, ପ୍ରାକ୍ତନ ବିଦେଶ ସଚିବଙ୍କ ନେତୃତ୍ୱରେ ଗୋଟିଏ ଉଚ୍ଚକ୍ଷମତା ସମ୍ପନ୍ନ ଦଳ ପରିସ୍ଥିତିକୁ ଅଧୟନ କରିବା ପାଇଁ କାଶୀପୁର ଗସ୍ତ ଆରମ୍ଭ କରିଥିଲେ । ଦିଲ୍ଲୀସ୍ଥିତ ସି.ଏସ୍.ଡି ସଂସ୍ଥା ଦ୍ୱାରା ପ୍ରେରଣ କରାଯାଇଥିବା ଏହି ଉଚ୍ଚ କ୍ଷମତା ସମ୍ପନ୍ନ ଦଳ ପଛୁଆ ଅଞ୍ଚଳରେ କଳକାରଖାନା ବସାଇ ଆଦିବାସୀମାନଙ୍କର ଉନ୍ନତି କିପରି କରିହେବ; ସେଥିପାଇଁ ଆପୋଷ ମିଳାମିଶା ମାଧମରେ ବାତାବରଣକୁ କିପରି ପୂର୍ବର ସ୍ଥିର ଅବସ୍ଥାକୁ ଅଣାଯାଇ ପାରିବ, ସେହି କାର୍ଯ୍ୟ ପାଇଁ ଆସୁଥିବା ଏହି ଦଳ ନିରୀହ ଆଦିବାସୀମାନଙ୍କ ଉପରେ ବର୍ବରୋଚିତ ପୋଲିସ ଦମନଲୀଳାକୁ ନାପସନ୍ଦ କରିବା ସହିତ, ଆଦିବାସୀମାନଙ୍କର ନିର୍ଭୀକ ଆନ୍ଦୋଳନ ପ୍ରତି ସେମାନଙ୍କ ମନୋଭାବକୁ ରିପୋର୍ଟରେ ପ୍ରକାଶିତ କରିଥିଲେ ।

କାଶୀପୁର ଅଞ୍ଚଳରେ ଖଣିଖାଦାନକୁ ଉପଯୋଗ କରି କଳକାରଖାନା ମାଧମରେ କିପରି ଦ୍ରୁତ ଉନ୍ନୟନ କରିହେବ ସେଥିପାଇଁ ସେହି ୧୯୯୯ ମସିହାରେ ଏହି ଅଞ୍ଚଳର ବିଧାନସଭା ପ୍ରତିନିଧି ବିଭୀଷଣ ମାଝୀଙ୍କ ନେତୃତ୍ୱରେ ଗୋଟିଏ ସର୍ବଦଳୀୟ ସଂଗଠନ ଗଢାଗଲା । ଆଗରୁ ଖଣି ବିରୋଧୀ ଆନ୍ଦୋଳନରେ ନେତୃତ୍ୱ ନେଇ ଶ୍ରୀ ମାଝୀ ଲୋକମାନଙ୍କ ଦ୍ୱାରା

ନିର୍ବାଚିତ ହୋଇଥିଲେ । ପରବର୍ତ୍ତୀ ସମୟରେ ତାଙ୍କର ବିପରୀତ ଆଚରଣ ଯୋଗୁଁ ଆନ୍ଦୋଳନକାରୀ ଜନତା ତାଙ୍କ ଠାରୁ ଦୂରେଇ ଯିବାକୁ ଆରମ୍ଭ କଲେ । ନୂଆକରି ଗଢାଯାଇଥିବା ସର୍ବଦଳୀୟ କମିଟି ଲୋକମାନଙ୍କ ପାଖରେ ପହଞ୍ଚି ନପାରି ରାଜ୍ୟ ମୁଖ୍ୟମନ୍ତ୍ରୀଙ୍କୁ ଭେଟି ସେହି ଅଞ୍ଚଳରେ କାର୍ଯ୍ୟରତ ସ୍ୱେଚ୍ଛାସେବୀ ସଂଗଠନକୁ ବେଆଇନ କରିବା ପାଇଁ ନିବେଦନ କଲେ । ଏହିପରି ସଙ୍ଗୀନ ଅବସ୍ଥାରେ ସର୍ବଦଳୀୟ କମିଟି ଆନ୍ଦୋଳନକୁ ଦବାଇଦେବା ପାଇଁ ପଇସା ଓ ବାହୁବଳର ଆଶ୍ରୟ ନେବାକୁ ମଧ୍ୟ ଆରମ୍ଭ କଲେ । ଠିକାଦାରମାନଙ୍କୁ ନିଯୁକ୍ତି ଦିଆଯାଇ କମ୍ପାନୀ ପାଇଁ ଭିତ୍ତିଭୂମି ତିଆରି ଲକ୍ଷ୍ୟରେ ରାସ୍ତାଘାଟର ତିଆରି କରିବା ପାଇଁ ଉଦ୍ୟମ କରାଗଲା । ଏହା ବିରୁଦ୍ଧରେ ଏହି ଅଞ୍ଚଳର ୧୦ ହଜାର ଲୋକ ସମବେତ ହୋଇ ସ୍ୱର ଉଠାଇଥିଲେ । ତଥାକଥିତ ସର୍ବଦଳୀୟ କମିଟି- ବିନା କୌଣସି ଲୋକ ସମର୍ଥନରେ ଚାଲୁରହିଛି ବୋଲି ଜଣାପଡିଲା । ଏହା ସତ୍ତ୍ୱେ ସର୍ବଦଳୀୟ କମିଟି ସେମାନଙ୍କର ପତିଆରା ଲଦିଦେବାପାଇଁ ଶୀତଳ ଯୁଦ୍ଧ ଅବ୍ୟାହତ ରଖିବା ପାଇଁ ଆରମ୍ଭ କଲେ । ଏହାର ଦୁଃଖଦ ପରିଣତି ୨୦୦୦ସାଲର ମାଇକଞ୍ଚ ଗୁଳିକାଣ୍ଡ ଘଟଣାକୁ ଆଣିଦେଲା । ସମବେତ ଖଣିବିରୋଧୀ ଜନ ସମାବେଶକୁ ଭଣ୍ଡୁର କରିବା ପାଇଁ ସର୍ବଦଳୀୟ କର୍ମକର୍ତ୍ତା ଅଧିକ ପୋଲିସ ବନ୍ଦୋବସ୍ତ ଭିତରେ ମାଇକଞ୍ଚରେ ପହଞ୍ଚିବା ପାଇଁ ଚେଷ୍ଟା କରିଥିଲେ । ଏହା ଫଳରେ ଉଷ୍ମ ପରିବେଶରେ ନିଆଁ ଲାଗିଲାଭଳି ଅବସ୍ଥା ଆସିଲା । ଶେଷରେ ପୋଲିସ ଗୁଳିରେ ତିନିଜଣ ନିରୀହ ଆଦିବାସୀ ନିଜ ଭିଟାମାଟିର ସୁରକ୍ଷା ପାଇଁ ସହୀଦ ହୋଇଗଲେ ।

ଏହାପରେ ସଚରାଚର ଆଇନ ଅମାନ୍ୟ ଆନ୍ଦୋଳନ ଯେପରି ଗୁଳିକାଣ୍ଡ ହତ୍ୟାପରେ ତେଜିଉଠିଥାଏ, ତାହାହିଁ କାଶୀପୁରରେ ହୋଇଥିଲା । ଅଭିଳାଷ, ଜାମଧର ଓ ରଘୁନାଥର ମୃତ୍ୟୁ ଆନ୍ଦୋଳନକୁ ଆହୁରି ସଶକ୍ତ କରି ଗଢିତୋଳିଲା । ଓଡ଼ିଶା ସରକାରଙ୍କର ଏଇ ପ୍ରକାର ଖୋଲାଖୋଲି ନଗ୍ନ ଆକ୍ରମଣ ବିରୁଦ୍ଧରେ ଆନ୍ତର୍ଜାତିକ ସ୍ତରରେ ସ୍ୱର ଉତ୍ତୋଳନ ହେଲା । ସରକାର ବାଧ୍ୟ ହୋଇ ଗୁଳିକାଣ୍ଡ ସଂପର୍କରେ ଏକ ନ୍ୟାୟିକ କମିଶନ ବସାଇବା ପାଇଁ ସ୍ଥିର କଲେ । କମିଶନ କୌଣସି ନିଷ୍ପତ୍ତିରେ ପହଞ୍ଚିବା ପୂର୍ବରୁ "ଉତ୍କଳ"କୁ ଖଣି କାର୍ଯ୍ୟ ଆରମ୍ଭ କରିବା ପାଇଁ ସରକାର ସବୁଜ ସଙ୍କେତ ଦେଲେ । ସରକାରଙ୍କ ତରଫରୁ ଖଣିକାର୍ଯ୍ୟ ପାଇଁ ଲୋକଙ୍କର ସମର୍ଥନ ଅଛି ବୋଲି ସୂଚାଇବା ପାଇଁ ଏକ ବିଶାଳ ସଭାର ଆୟୋଜନ ଟିକିରିରେ ଆରମ୍ଭ କଲେ ।

ସେପ୍ଟେମ୍ବର ୧୧, ୨୦୦୪ ମସିହାରେ, ଆଞ୍ଚଳିକ ଖବରକାଗଜଗୁଡିକ- ଉତ୍କଳ ଆଲୁମିନା ପ୍ରକଳ୍ପ କରିବା ସପକ୍ଷରେ ଖଣି ଅଞ୍ଚଳରେ ଅବସ୍ଥିତ ଗ୍ରାମସଭାମାନ ଅନୁମତି ପ୍ରଦାନ କରି ପ୍ରତିଷ୍ଠା ବିରୁଦ୍ଧରେ ଥିବା ଆଇନଗତ ପ୍ରତିବନ୍ଧକ ହଟାଯାଇ ପାରିଛି ବୋଲି ଏକ ପ୍ରମୁଖ ସଂବାଦ ପ୍ରକାଶ କଲେ ।

ଅସଲ କଥା ହେଉଛି କ୍ଷମତାପ୍ରାପ୍ତ ଗ୍ରାମସଭା- ଗ୍ରାମ ସଭ୍ୟମାନଙ୍କ ଦ୍ୱାରା ଗ୍ରାମସଭା ଡକା ଯିବାର ବ୍ୟବସ୍ଥା ଥିଲେ ମଧ୍ୟ ଜିଲ୍ଲାପାଳ ଓ ଅନ୍ୟ ସରକାରୀ କର୍ମଚାରୀଙ୍କ ଉପସ୍ଥିତି ସେଠି କାହିଁକି ହୋଇଥିଲା ବୁଝା ପଡିଲା ନାହିଁ । ପଲ୍ଲୀସଭାରେ ଦରଜ କରାଯାଇଥିବା ବିବରଣୀରେ ବୁମ୍ବକରେ

ସଭା ସବୁ ଠିକ୍‌ଠାକ ଭାବରେ ପରିଚାଳିତ ହୋଇଥିଲା ବୋଲି ଉଲ୍ଲେଖ ରହିଲା । ଅବଶ୍ୟ ବିବରଣୀକୁ ଆପାତତଃ ସମତୁଲ ରଖିବା ପାଇଁ ଜଣେ କିଏ ଭଗବାନ ମାଝୀଙ୍କ ନେତୃତ୍ୱରେ କିଛି ଲୋକ ହଟଗୋଳ ହୋଇଥିଲା ବୋଲି ମଧ୍ୟ ଉଲ୍ଲେଖ କରାଗଲା ।

ଆହୂତ କରାଯାଇଥିବା ପଲ୍ଲୀସଭା ଏବଂ ପଲ୍ଲୀସଭାରେ ଜିଲ୍ଲାପାଳଙ୍କର ଉପସ୍ଥିତିର ବୈଧତା ସଂପର୍କରେ କେହି ପ୍ରଶ୍ନ ଉଠାଇଲେ ନାହିଁ । ଅଥଚ ଖଣି ସଂପର୍କରେ ଏକ ସହମତି ଅଛି ବୋଲି କୁହାଗଲା । ପରେ ପରେ ମୁଖ୍ୟମନ୍ତ୍ରୀଙ୍କ ଖଣିବିରୋଧୀ ଆନ୍ଦୋଳନକୁ ଦୃଢଭାବରେ ଦମନ କରାଯିବାଭଳି ବିବୃତି ମଧ୍ୟ ଦେଲେ । ଏହି ଅଞ୍ଚଳରେ ବଡ଼ ବଡ଼ କମ୍ପାନୀ ଗୁଡିକ ସରକାରଙ୍କର ପ୍ରତ୍ୟକ୍ଷ ସାହାଯ୍ୟରେ ଅପରାଜେୟ ରାକ୍ଷସ ପାଲଟି ଯାଇଛନ୍ତି । ଉତ୍କଳ ଆଲୁମିନିଅମ୍ ଇଣ୍ଟରନେସନାଲ୍ ସେହିପରି ଆଜି ଏକ ରାକ୍ଷାସୀଶକ୍ତି ହୋଇଛି । ବାଫଲିମାଳିର ଗଚ୍ଛିତ ଆଲୁମିନିଅମ୍ ଅତିଉତ୍କୃଷ୍ଟ ଧରଣର ହୋଇଥିବାରୁ ଏଥିରୁ କମ୍ପାନୀ ପ୍ରଚୁର ମୁନାଫା ପାଇବ ବୋଲି ଆଶା ରଖିଛି । ଏହି ମୁନାଫା କମାଇବା ରାସ୍ତାରେ କିଛି ଆଦିବାସୀ ମରିଗଲେ ଯାଏ ଆସେନାହିଁ । ୧୨ ବର୍ଷକାଳ ବିତିଯାଇଥିଲେ ମଧ୍ୟ ଏହି ଉତ୍କଳ ଆଲୁମିନା ତା'ର ଏଜେଣ୍ଡାକୁ ଏକରକମ ଠେଲି ରଖିଛି । ଅସଲ ସତ୍ୟଟା ହେଉଛି ଖୁବ୍‌କମ୍ ପୁଞ୍ଜି ଲଗାଇ ଶତ ପ୍ରତିଶତ ଲାଭର ଭଣ୍ଡାର ଏଠି ମହଜୁଦ ଅଛି ବୋଲି ବିରଳା ଓ ଆଲ୍‌କାନ୍ କର୍ତ୍ତୃପକ୍ଷ ବେଶ ଅବହିତ ଅଛନ୍ତି ।

ଇଣ୍ଡାଲ୍‌ରେ ସର୍ବାଧିକ ଅଂଶଧନ (୯୭%) ଥିବା ବିରଳାଗ୍ରୁପ

ଓଡ଼ିଶାରେ ଆଲୁମିନିଅମ୍ ଶିଳ୍ପ ପାଇଁ ଅଧିକ ପୁଞ୍ଜି ବିନିଯୋଗ କରିବା ପାଇଁ ନିଷ୍ପତ୍ତି ନେଇଛି । କୋଡିଙ୍ଗାମାଳିରେ ଗଚ୍ଛିତ ଆଲୁମିନିଅମ୍କୁ ବ୍ୟବହାର କରିବା ପାଇଁ ଆଦିତ୍ୟ ବିରଳା ଆଗେଇ ଆସିଛି । ପୁଣି ବିରଳା ଗ୍ରୁପର ଫ୍ଲାଗସିପ୍ କୁହାଯାଉଥିବା ହିଣ୍ଡାଲ୍କୋ ଏଥିପାଇଁ ୧୫୦୦ କୋଟି ଟଙ୍କା ବିନିଯୋଗ କରିବା ପାଇଁ ପ୍ରସ୍ତାବ ରଖିଛି । ଏପରି ସର୍ବାଧିକ ପୁଞ୍ଜିଲଗାଣ କରି ବିରଳା ସାରା ବିଶ୍ୱରେ ଆଲୁମିନିଅମ ଶିଳ୍ପ ସହିତ ଯୋଡିହୋଇଥିବା ପ୍ରଥମ ୧୦ଜଣ ଶିଳ୍ପପତିଙ୍କ ମଧ୍ୟରେ ସ୍ଥାନ ପାଇବା ପାଇଁ ଆଶା ରଖିଛି । ଖଣି କାର୍ଯ୍ୟ ଚାଲୁ ରଖାଯିବା ଲାଗି ଏହା ଏକ ସବୁଜ ସଙ୍କେତ ବୋଲି ଏଥିରୁ ବୁଝାପଡୁଛି । ୨୦୦୪ ଡ଼ିସେମ୍ବର ୧ରୁ ଏହି ଖଣି କାର୍ଯ୍ୟ ପୋଲିସମାନଙ୍କର ବନ୍ଧୁକ ସହାୟତାରେ ପୁଣି ଆରମ୍ଭ କରାହେଲା । ଆନ୍ଦୋଳନକାରୀ ଲୋକମାନଙ୍କୁ ନିଜ ଆଡ଼କୁ ଆଉଜାଇ ଆଣିବା ପାଇଁ ଲାଞ୍ଚ ନେବା ପାଇଁ ବାଧ କରାଗଲା । ପ୍ରୋତ୍ସାହନ ଯୋଗାଇ ଦେଇ ଆନ୍ଦୋଳନବିରୋଧୀ ପ୍ରମୁଖ ନେତାମାନଙ୍କର ସମ୍ପର୍କରେ ତଥ୍ୟ ସଂଗ୍ରହ ମଧ କରାଗଲା – ଏହି ଅଞ୍ଚଳରେ ଇଣ୍ଡିଆ ରିଜର୍ଭ ବାହିନୀ ସମେତ ଅନ୍ୟ ପୋଲିସ ଫଂଉଜ ଛାଉଣୀ ମଧ ପକାଗଲା – ଏଥିରେ କେବଳ ସନ୍ତୁଷ୍ଟ ନରହି ଆନ୍ଦୋଳନ ବିରୋଧୀ ସ୍ତ୍ରୀ ଓ ପୁରୁଷମାନଙ୍କୁ ରାଡ଼ିଅଧିଆ ଗ୍ରେପ୍ତାର ମଧ କରାଗଲା । ଏହିସବୁ ତଥ୍ୟ ପିଉପିଲସ୍ ଇଉନିଅନ୍ ଅଫ ସିଭିଲ୍ ଲିବର୍ଟିରେ (ନାଗରିକ ଅଧିକାର ପାଇଁ ଜନ ଏକତା) ପ୍ରକାଶ ପାଇ ସରକାରଙ୍କର ଅଗଣତାନ୍ତ୍ରିକ କାର୍ଯ୍ୟଧାରାକୁ ଭବିଷ୍ୟତ ପାଇଁ ଲିପିବଦ୍ଧ କରାଗଲା । ଏହି ଅଞ୍ଚଳରେ ଏବେ ଗୋଟାଏ ପ୍ରକଳ୍ପର ବିରୁଦ୍ଧରେ ଉଷ୍ମ ନତ୍ପତିଆ ଆବହାଓ୍ୱା ଖେଳି ବୁଲୁଛି, କିଏ ଜାଣେ – କେତେବେଳେ

ଆଉ ଏକ ମାଇକଞ୍ଚ ଘଟଣା ଏଠି ନଘଟିବ କହିହେବ ନାହିଁ । ସବୁଠାରୁ ଆଶ୍ଚର୍ଯ୍ୟର କଥା ଏହି ଯେ କୁହାଯାଉଥିବା ନିଷ୍ପକ୍ଷ ପୋଲିସ୍ ଫଉଜ ଉତ୍କଳ ଆଲୁମିନା କ୍ୟାମ୍ପସରେ କର୍ତ୍ତୃପକ୍ଷଙ୍କ ଆତିଥ୍ୟରେ ଆଶ୍ରୟ ନେଇ ସେମାନଙ୍କର ସାମ୍ବିଧାନିକ କର୍ତ୍ତବ୍ୟ ନିର୍ବାହ କରି ଚାଲିଛନ୍ତି । ଏହି ଖଣି ଓ କାରଖାନା ହେଲେ ରାଜ୍ୟର ଅଭିବୃଦ୍ଧି ହାର ୭% ହେବ ବୋଲି ପ୍ରଚାର କରାଯାଉଛି ।

କିନ୍ତୁ ମୁଖ୍ୟମନ୍ତ୍ରୀଙ୍କର ଘୋଷିତ ଏହି ଲକ୍ଷ୍ୟ ହାସଲ ହେବାରେ ଅନେକ ସନ୍ଦେହ ରହିଛି । ରାଜ୍ୟର ପ୍ରମୁଖ କୃଷିଭିତ୍ତିକ ଅର୍ଥନୀତି ଏଠି କ୍ରିୟାଶୀଳ ହୋଇଆସିଅଛି । ପୁଣି ସଂଖ୍ୟାଧିକ ଲୁହାଖଣିରୁ ପଥର ଉତ୍ତୋଳନ ଏବଂ କଳକାରଖାନା ନିର୍ମାଣ ରାଜ୍ୟର ଭାତହାଣ୍ଡି କୁହାଯାଉଥିବା କୃଷି ଅର୍ଥନୀତିକୁ ନଷ୍ଟଭ୍ରଷ୍ଟ କରି ଦେବାର ଆଶଙ୍କା ରହିଛି । ସମ୍ପ୍ରତି ଏହା ବିରୁଦ୍ଧରେ କୋରାପୁଟ ଅଞ୍ଚଳରେ ଯେଉଁ ଆନ୍ଦୋଳନ ଦାନା ବାନ୍ଧୁଛି ସେ ମଧ୍ୟ ଅନ୍ତରାୟ ସୃଷ୍ଟି କରିବ । ଖଣି ଓ କଳାକାରଖାନା ପାଇଁ ବାସଚ୍ୟୁତ ହେବା ଏକ ପ୍ରମୁଖ ସ୍ପର୍ଶକାତର ସମସ୍ୟା – ଅବଶ୍ୟ ରାଜ୍ୟସରକାର ୩ବର୍ଷ ସମୟ ଭିତରେ ବାସ୍ତୁହରାମାନଙ୍କୁ ଥଇଥାନ କରିବା ପାଇଁ ଯୋଜନା କରିଛନ୍ତି ବୋଲି ଘୋଷଣା କରିଛନ୍ତି (?) ।

ସରକାରଙ୍କ ତରଫରୁ ପ୍ରକଳ୍ପ ପ୍ରପୀଡ଼ିତମାନଙ୍କ ପାଇଁ ଅନେକଗୁଡ଼ିଏ ସୁବିଧା ସୁଯୋଗ ଦିଆଯିବାର ବ୍ୟବସ୍ଥା କରାଯାଇଛି । କିନ୍ତୁ ଏହି ସୁବିଧା ସୁଯୋଗଗୁଡ଼ିକ କଣ ପର୍ଯ୍ୟାପ୍ତ ଭାବରେ ଯଥେଷ୍ଟ। ଆମ ଦେଶରେ ବିଶେଷଭାବରେ ଓଡ଼ିଶାରେ ଶାସନ ଓ ପ୍ରଶାସନର ପ୍ରବାହ ଧାରା ପ୍ରକଳ୍ପ

ପ୍ରପୀଡ଼ିତ ଆଦିବାସୀମାନଙ୍କୁ ମୋଟେ ସହାୟତା ପ୍ରଦାନ କରେନାହିଁ । ଅପର ପକ୍ଷରେ ଉନ୍ନୟନ ନାମରେ ସେମାନଙ୍କୁ ଧିରେଧିରେ ମରଣର କୃଷ୍ଣଗର୍ଭ ନିକଟକୁ ପ୍ରଶାସନ ଠେଲି ନେଇଚାଲିଛି । ଓଡ଼ିଶାରେ ସ୍ଥାନୀତ ଆଦିତ୍ୟ ବିରଳା ଏବଂ ଉତ୍କଳ ଆଲୁମିନିୟମ୍ ପ୍ରକଳ୍ପରେ ଏହି ବିପୁଳ ପୁଞ୍ଜି ଲଗାଣହେବାକୁ ଅଛି । ଓଡ଼ିଶାରେ ମଧ୍ୟ ପ୍ରଚୁର ଲୁହାପଥର ଗଚ୍ଛିତ ହୋଇ ରହିଛି । ଏ ସମ୍ପର୍କରେ ଷ୍ଟିଲ୍‌ୱାର୍ଲ୍ଡ ତରଫରୁ ପ୍ରକାଶିତ ବିବରଣୀରୁ ଜଣାଯାଇଛି ଯେ – ରାଜ୍ୟରେ ଗଚ୍ଛିତ ଲୁହାପଥର ଉତ୍ତୋଳନ ଓ ଏହାର ବିକ୍ରିବଟା ପାଇଁ ସବୁଠାରୁ ଅଧିକ ସୁବିଧା ଜନକ ଦିଗଟି ହେଉଛି ରାଜ୍ୟର ସମୁଦ୍ରପଥ । ଏହାଦ୍ୱାରା ଖୁବ୍ କମ୍ ଖର୍ଚ୍ଚରେ ମାଲ ପରିବହନ କରାଯାଇ ପାରିବ । ଏହି ସୁବିଧାରୁ ଅଧିକ ଲାଭ ଉପଲବ୍ଧ କରିବା ପାଇଁ ବିଶ୍ୱର ନାମୀଦାମୀ ଲୌହ ଶିଳ୍ପୋଦ୍ୟୋଗୀମାନେ ଓଡ଼ିଶାରେ ପୁଞ୍ଜି ଲଗାଣ ପାଇଁ ଆଗ୍ରହ ଦେଖାଉଛନ୍ତି । ଟାଟା କମ୍ପାନୀ ସମୁଦ୍ରପଥରେ ଏହି ମାଲ ପରିବହନ ପାଇଁ ବନ୍ଦର ଭିତ୍ତିଭୂମି ତିଆରି କରିବା ପାଇଁ ଆଗ୍ରହୀ ଅଛି । ଲୁହାଖଣିର ଏହି ପ୍ରସ୍ତାବିତ ବ୍ୟାପକ ସଂପ୍ରସାରଣ ଖଣି ଅଞ୍ଚଳର ବାସିନ୍ଦାମାନଙ୍କର ଜୀବନଜୀବିକା ସହିତ ପରିବେଶକୁ ଓଲଟପାଲଟ କରିଦେବ ବୋଲି ଆଶଙ୍କା ପ୍ରକାଶ ପାଉଛି ।

ରାଜ୍ୟର ଖଣିଜ ସମ୍ପଦର ପ୍ରାଚୁର୍ଯ୍ୟ ପରିପ୍ରେକ୍ଷୀରେ ରାଜ୍ୟ ମୁଖ୍ୟମନ୍ତ୍ରୀ ଦିଲ୍ଲୀଠାରେ ଶିଳ୍ପ ବଣିକ ସଂସ୍ଥାର ଏକ ସଭାରେ ରାଜ୍ୟ ଦ୍ରୁତ ଶିଳ୍ପାୟନ ବାଟରେ ତାର ଜି.ଡ଼ି.ପି.(ମୋଟ ଘରୋଇ ଉତ୍ପାଦ)କୁ ୭ ପ୍ରତିଶତ ବୃଦ୍ଧି କରିବାକୁ ମନସ୍ଥ କରିଛି ବୋଲି ସୂଚନା ଦେଇଥିଲେ ।

ଆଦିବାସୀମାନେ ଉଦ୍‌ବାସ୍ତୁକରଣ, ଅନାହାର, ଭିଟାମାଟି ଉଚ୍ଛେଦଜନିତ ପଳାୟନ ବାଟରେ ମରଣ ଦୁଆରକୁ ଠେଲିହୋଇ ଯାଉଛନ୍ତି । ଯେତେବେଳେ ଉନ୍ନୟନ ସ୍ରୋତରେ ଅଣନିଶ୍ୱାସୀ ହୋଇ ଆଦିବାସୀ ବାପୁଡ଼ା ଜଙ୍ଗଲ ଓ ତାର ଜମି ଭଳି କୁଟାଖିଅ ଧରି କେବଳ ଭାସିରହି ବଞ୍ଚିରହିଛି, କୁଟାଖିଅକୁ ଅଣହାତ କରିସାରଲାପରେ ଆଉ କଣ ସେମାନଙ୍କ ପାଖରେ ବଞ୍ଚିବାକୁ ରହିଲା !

କାଶୀପୁର ଅଞ୍ଚଳର ଆଦିବାସୀମାନେ ସବୁ ନାହିଁନାହିଁ ଭିତରେ ପୁଣି ସରକାରଙ୍କ ପୋଲିସରାଜର ନାଲି ଆଖିକୁ ସାମ୍ନାକରି ସେମାନଙ୍କର ଐତିହାସିକ ଆନ୍ଦୋଳନ ଚଲୁରଖିଛନ୍ତି । ଲୋକମାନଙ୍କର, ଲୋକମାନଙ୍କ ପାଇଁ ଓ ଲୋକମାନଙ୍କ ଦ୍ୱାରା ନିର୍ବାଚିତ ସରକାର ନିରୀହ ଆଦିବାସୀମାନଙ୍କୁ ଦମନକରି ଗୋଟିଏ ଜିତାପଟ ନେଇଛନ୍ତି ବୋଲି କହୁଛନ୍ତି! କିନ୍ତୁ ଏହା କ'ଣ ଗଣତାନ୍ତ୍ରିକ ରାଷ୍ଟ୍ରରେ ଜିତାପଟ ?

ପଡୋଶୀ କଳାହାଣ୍ଡି ଜିଲ୍ଲାରେ ଷ୍ଟେରଲାଇଟ୍ ସବୁଠାରୁ ଡେରିରେ ଆସି ଅତି କ୍ଷିପ୍ରତର ଭାବରେ ତା'ର ପ୍ରକଳ୍ପ କାର୍ଯ୍ୟକୁ ତ୍ୱରାନ୍ୱିତ କରିଚାଲିଛି । ପ୍ରାକୃତିକ ସମ୍ପଦ ଘେରା ନିୟମଗିରିରେ ଖଣିକାର୍ଯ୍ୟ ଚାଲୁ କରିବାପାଇଁ ଆଦିବାସୀମାନଙ୍କୁ ବାସଚ୍ୟୁତ କରାଯାଇ କମ୍ପାନୀ ନିର୍ମାଣ କରିଥିବା କଲୋନୀମାନଙ୍କରେ ଆଶ୍ରୟ ପ୍ରଦାନ କରାଯାଇଛି । ଏଠି ମଧ୍ୟ ଧର୍ମକୁ ଆଖିଠାର ମାରିବାଭଳି ପଲ୍ଲୀସଭା ଆହୂତ କରାଯାଇ ଖଣିକାର୍ଯ୍ୟ ପାଇଁ ଗାଁଲୋକଙ୍କର ଅନୁମତିକୁ ତିଆରି କରାଯାଇଛି । ଏଭଳି ପଲ୍ଲୀସଭା ଫାର୍ସକୁ ରାୟଗଡ଼ା ଜିଲ୍ଲା କର୍ତ୍ତୃପକ୍ଷ ଉତ୍କଳ ଆଲୁମିନା ପାଇଁ ନୈତିକ ସାହାଯ୍ୟ ଯୋଗାଡ଼ କରିଦେଇଛି ।

କ୍ଷିପ୍ରଭାବରେ ଖଣିକାର୍ଯ୍ୟକୁ ଆଗେଇ ନେଉଥିବା ଷ୍ଟେରଲାଇଟ୍ କାର୍ଯ୍ୟରେ ସେଣ୍ଟ୍ରାଲ୍ ଏମ୍ପାୱାରଡ୍ କମିଟି (କେନ୍ଦ୍ରୀୟ କ୍ଷମତାସଂପନ୍ନ କମିଟି) ଯେତେବେଳେ ଅଙ୍କୁଶ କଷିଲା, କମ୍ପାନୀ ସୁପ୍ରିମ କୋର୍ଟର ଦ୍ୱାରସ୍ଥ ହୋଇଥିଲା । କିନ୍ତୁ ଉଚ୍ଚତମ ନ୍ୟାୟାଳୟ ତାରିଖ ମେ ୧୩, ୨୦୦୫ କମ୍ପାନୀର ଆବେଦନକୁ ଅଗ୍ରାହ୍ୟ କରିଦେଇଥିଲା । କିନ୍ତୁ ବାସ୍ତବରେ ତୃଣମୂଳ ସ୍ତରରେ କମ୍ପାନୀ କୋର୍ଟରାୟ ସତ୍ତ୍ୱେ ମଧ୍ୟ ତାର କାର୍ଯ୍ୟକ୍ରମ ଚଲୁ ରଖିଥିଲା ବୋଲି ଜଣାଯାଇଛି । ପୂର୍ବ କେନ୍ଦ୍ର ସରକାରଙ୍କର ଜଙ୍ଗଲ ସଚିବ ଯିଏକି ଲୋକଙ୍କ ସପକ୍ଷରେ ଥିଲେ କିନ୍ତୁ ପରବର୍ତ୍ତି ମୁହୂର୍ତ୍ତରେ ମତ ପରିବର୍ତ୍ତନ କରୁଛନ୍ତି ଏବଂ ସୁପ୍ରିମ୍ କୋର୍ଟର ନିଷ୍ପତ୍ତି ପ୍ରତି ରାଜ୍ୟପ୍ରଶାସନ ଜାଣି ନଜାଣିଲା ଭଳି ନୀରବ ଦର୍ଶକ ସାଜିଥିଲେ । ଏ ସମ୍ପର୍କରେ ଇଣ୍ଡିପେଣ୍ଡେଣ୍ଟ ମିଡ଼ିଆ ନେଟୱାର୍କର ବିବରଣୀ ଖୁବ୍ ତାତ୍ପର୍ଯ୍ୟପୂର୍ଣ୍ଣ ମନେହୁଏ । ଗଣମାଧ୍ୟମ ଦର୍ଶାଇ ଥିଲେ ଯେ – ଷ୍ଟେରଲାଇଟ୍ କାର୍ଯ୍ୟ ଅଭାବନୀୟ କ୍ଷିପ୍ରତାରେ ଆଗେଇ ଚାଲିଛି – ଏହା ଫଳରେ କିଛି ଲୋକ ମୃତାହତ ହୋଇଛନ୍ତି ବୋଲି ଶୁଣାଯାଉଛି ।

ସମ୍ପ୍ରତି କାଶୀପୁର ଆନ୍ଦୋଳନ କିଛିଟା ମନ୍ଥର ପଡିଯାଇଛି । ପୋଲିସରାଜର ଅନ୍ଧାଧୁନିଆ ଦମନଲୀଳା, ବହୁଦେଶୀୟ କମ୍ପାନୀ ସହିତ ସରକାରଙ୍କର ମଧୁଚନ୍ଦ୍ରିକା ଆଦି ଅଗ୍ରପ୍ରଧାନ । କାଶୀପୁର ଅଞ୍ଚଳର ଆନ୍ଦୋଳନକୁ ଦବାଇବାପାଇଁ ଯେତେଗୁଡ଼ିଏ ପଦକ୍ଷେପ ନିଆଯାଇଛି – ସେଗୁଡ଼ିକ ନିରନ୍ତର ଦମନଲୀଳା, ଗଣମାଧ୍ୟମକୁ ତୁଷ୍ଟକରିବା ପାଇଁ ସାମ୍ବାଦିକ ସଂଘ ନିର୍ବାଚନକୁ ଆର୍ଥିକ ସାହାଯ୍ୟ ଯୋଗାଇବା ଆଦି ଅନ୍ତର୍ଭୁକ୍ତ । ୧୦ ପ୍ଲାଟୁନ ପୋଲିସର ରାସ୍ତା ଅବରୋଧ ସତ୍ତ୍ୱେ ମଧ୍ୟ ମେ

୨୫, ୨୦୦୫ ରେ ଏହି ଅଞ୍ଚଳରେ ଯେଉଁ ଅଭୂତପୂର୍ବ ଜନସମାଗମ ହୋଇଥିଲା ସେଥିରେ ଏହି ଆନ୍ଦୋଳନ ଦବିନାହିଁ ବୋଲି ସ୍ପଷ୍ଟ ସଙ୍କେତ ଦେଇଥିଲା ।

କାଶୀପୁର ଅଞ୍ଚଳ ସଂପ୍ରତି ଗରମ କଡ଼େଇ ପରି ଟକମକ ହୋଇଉଠିଛି । କିଏ ଜାଣେ କେତେବେଳେ – ଏହା କେଉଁଆଡ଼େ ମୁହାଁଇଯିବ । ଏହି ଆନ୍ଦୋଳନକୁ ରାଜ୍ୟର କୌଣସି ରାଜନୈତିକ ଦଳ ସାହାଯ୍ୟ ଯୋଗାଇ ନାହାନ୍ତି । ସିଭିଲ ସୋସାଇଟି (ନାଗରିକ ସମାଜ) ମଧ୍ୟ ସରକାରଙ୍କର ରୋଷରୁ ବର୍ତ୍ତିବା ପାଇଁ ଦୂରେଇ ଯାଇଛି । ଓଡ଼ିଶା ସରକାର ସୁପ୍ରିମ୍ କୋର୍ଟର ରାୟ, ଯାହାକି ତଫସିଲ ଅଞ୍ଚଳରେ ଜମି ଅଧିଗ୍ରହଣ କରାଯାଇ ପାରିବ ନାହିଁ; ତାକୁ ମଧ୍ୟ ଗୁରୁତ୍ୱ ଦେଉନାହାନ୍ତି । ସୁପ୍ରିମ୍‌କୋର୍ଟଙ୍କ ଉକ୍ତ ରାୟ ବହୁଚର୍ଚ୍ଚିତ ସମତା ରାୟ ହୋଇଥିଲେ ମଧ୍ୟ ରାଜ୍ୟ ସରକାର ଏହା ଓଡ଼ିଶା ପାଇଁ ପ୍ରଯୁଜ୍ୟ ନୁହେଁ ବୋଲି କହୁଛନ୍ତି ।

ଏଠି ଜାଣିବାର କଥା ଯେ, ଆଦିବାସୀ ଭାଇଭଉଣୀଙ୍କୁ ତାଙ୍କର ଜଙ୍ଗଲ ଓ ଜମି ଯେମିତି ସାହାଯ୍ୟ କରିଥାଏ ସେହିଭଳି ତାଙ୍କର ଲୋକ ପ୍ରତିନିଧି ନୁହେଁ । ଦେଶର ପ୍ରଣୀତ ପରିବେଶ ଆଇନ, ଜଙ୍ଗଲ ଆଇନର କ୍ରିୟାଶୀଳତା ଆଦିବାସୀମାନଙ୍କୁ ଯେତିକି ସାହାଯ୍ୟ ଯୋଗାଇପାରିବ, କୁହାଯାଉଥିବା ଜନପ୍ରିୟ ସରକାର ସେପରି ସାହାଯ୍ୟ କରିପାରିବେ ନାହିଁ । ଏହି କଥାକୁ ଲକ୍ଷ୍ୟରେ ରଖି ଲାଞ୍ଜିଗଡ଼ ଅଞ୍ଚଳରେ ଆନ୍ଦୋଳନର ସ୍ୱର ତେଜିଆନ ହେବାକୁ ବସିଛି । ସେହିପରି କାଶୀପୁର ଅଞ୍ଚଳରେ ପୁଣି ଆନ୍ଦୋଳନ କିଛି ସମୟ ପଡ଼ିଯାଇ ପୁଣି ଚେଇଁଉଠିଛି ।

ଖଣି ଅଞ୍ଚଳରୁ ବକସାଇଟ୍ ଉତ୍ତୋଳନ ପରିବେଶର ସମୀକରଣକୁ ଓଲଟପାଲଟ କରିବା ସହିତ ଏଠାରେ ବସତି କରି ରହିଥିବା ମୂଳ ଆଦିବାସୀ ବାସିନ୍ଦାମାନଙ୍କ ସ୍ୱାସ୍ଥ୍ୟ ଉପରେ ଅନେକ ପ୍ରଭାବ ପକାଇବ । ବକସାଇଟ୍ ପଥରରେ ବକସାଇଟ୍ ଓ ପଥରର ପରିମାଣ ୧ :୩ । ଏହା ଅର୍ଥ, ଏକ ଟନ ବକସାଇଟ୍ ପାଇବା ପାଇଁ ୩ ଟନ ମଇଳା ବାହରିବ । ଏହି ମଇଳା ଅଧିକ କ୍ଷାରଯୁକ୍ତ ଥିବା ହେତୁ ଲୋକମାନଙ୍କର ସ୍ୱାସ୍ଥ୍ୟକୁ ପ୍ରଭାବିତ କରିଦେବ ବୋଲି ଆଶଙ୍କା କରାଯାଉଛି । ଏହି ମଇଳା ନଦୀନାଳ ଜଳରେ ମିଶି ପ୍ରାକୃତିକ ଜଳଧାରାକୁ ଦୂଷିତ କରିଦେବ ବୋଲି ସମ୍ଭାବନା ଅଛି । ଏହି ସମ୍ଭାବ୍ୟ ପ୍ରଦୂଷଣର କାରଣ ପାଇଁ ପରିବେଶ ବିଭାଗ ତରଫରୁ ଯେଉଁ ପ୍ରମାଣ ପତ୍ର ଥିବା କଥା ଉତ୍କଳ ଆଲୁମିନା ତାହା ହାସଲ କରିନାହିଁ । ଏ ସମ୍ପର୍କରେ ଉଦ୍ୟୋଗର ଅନ୍ୟ ପ୍ରମୁଖ ଅଂଶୀଦାର ଆଲକାନ୍ କମ୍ପାନୀର ସି.ଇ.ଓ ମାଇକେଲ ହାନଲେଙ୍କ ଯୁକ୍ତି ରହସ୍ୟଜନକ ମନେ ହୁଏ । ଆଗରୁ ସରକାରଙ୍କ ଦ୍ୱାରା ଯେଉଁ ଚୁକ୍ତି ସମ୍ପାଦିତ ହୋଇଥିଲା ତାହା ୩ ବର୍ଷ ତଳୁ ଅକାମି ହୋଇଯାଇଛି । ନୂଆ ଚୁକ୍ତିରେ ଉପରୋକ୍ତ ପ୍ରମାଣ ପତ୍ରର ଆବଶ୍ୟକ ନାହିଁ ।

ପରିବେଶର ଛତ୍ରଛାୟା ତଳେ ଉଭୟ ମଣିଷ ଓ ଜୀବଜନ୍ତୁ ପରସ୍ପର ସହିତ ତାଳମେଳ ରକ୍ଷାକରି ବଞ୍ଚି ରହିଛନ୍ତି । ପାରିବେଶିକ ଅସନ୍ତୁଳନ ଦୁଇଟି ଉପରେ ବ୍ୟାପକ ପ୍ରଭାବ ପକାଇ ପାରିବ । ସରକାର ପ୍ରଚଳିତ ଉନ୍ନୟନ ତତ୍ତ୍ୱ ଲମ୍ଫ ଦୌଡରେ କିପରି ବିତ୍‌ପାତ

ଆଣିଦେବ, ତାହା ଜାଣି ନଜାଣିଲାପରି ଚୁପ୍ ହୋଇ ରହିଛନ୍ତି । କାଶୀପୁର ଆଦିବାସୀ ସଂପ୍ରଦାୟ ବାସ୍ତବତାକୁ ସାମନା କରି ସେମାନଙ୍କର ନଗଣ୍ୟ ଶକ୍ତିର ଶିଙ୍ଘକୁ ସର୍ବଶକ୍ତିମାନ ସରକାର ବିରୁଦ୍ଧରେ ଲଗାଇ ଦେଇଛନ୍ତି ।

ବାସ୍ତବତା ହେଉଛି, ସନ୍ତୁଳିତ ପରିବେଶ ଭିତରେ ସଂସ୍କୃତିକୁ ସାଥିରେ ନେଇ ନିର୍ଭରଯୋଗ୍ୟ ଜୀବନଜୀବିକା ଲାଗି ଯୋଜନାଟିଏ ପ୍ରଣୟନ କରିବା ।

---

# କାଶୀପୁର ଖଣିଖାଦାନ ବିରୋଧୀ ଆନ୍ଦୋଳନର ଘଟଣାବଳୀ

*୧୯୯୩:* ଟାଟା, ଆଲ୍‌କାନ, ଏବଂ ନରସକ୍ ହାଇଡ୍ରୋର ମିଳିତ ସହଯୋଗରେ ଉତ୍କଳ ଆଲୁମିନା ତାର ସର୍ବେକ୍ଷଣ କାର୍ଯ୍ୟ କାଶୀପୁର ବ୍ଲକରେ ଆରମ୍ଭ କଲା ।

*୧୧.୧୧.୯୩:* ଖଣି ଆରମ୍ଭ ହେଲେ ସ୍ଥାନୀୟ ଲୋକଙ୍କର କେଉଁସବୁ ସ୍ୱାର୍ଥ ନିହିତ ଅଛି ଜାଣିବା ପାଇଁ ୧୮ଜଣିଆ ଟିମ୍ କାଶୀପୁରରୁ ବାହାରି ରାଜ୍ୟ ମୁଖ୍ୟମନ୍ତ୍ରୀଙ୍କୁ ଦାବୀ ଆକାରରେ ଜଣାଇଥିଲେ ।

*୧୯୯୪:* ଖଣି ଖୋଳାକୁ ନେଇ କୁଚେଇପଦର ଗାଁର ଲୋକେ ଉତ୍କଳ ଆଲୁମିନାର ଯାନବାହାନକୁ ସେମାନଙ୍କ ଅଞ୍ଚଳକୁ ପ୍ରବେଶ କରିବାକୁ ବିରୋଧ କଲେ ।

*୨୩.୦୪.୯୫:* କୁଚେଇପଦରର ଗୁରୁନାଥ ମାଝୀ ଏବଂ ମହାରାଜା ମାଝୀ ଆଦି ନେତାଙ୍କୁ ପୋଲିସ ଗିରଫ କଲେ ।

*୨୧.୦୧.୯୬:* ସ୍ଥାନୀୟ ଲୋକଙ୍କୁ ସଂଗଠିତ କରିବା ପାଇଁ ଉତ୍କଳ ଆଲୁମିନା କୁଚେଇପଦର ପାଖରେ ସଭାର ଆୟୋଜନ କରିଥିଲା ।

*୧୪.୦୨.୯୬:* ୧୦ ହଜାରରୁ ଉର୍ଦ୍ଧ୍ୱ ଆଦିବାସୀ କୁଚେଇ ପଦରଠାରେ ଆରମ୍ଭ କରିଥିଲେ 'ପ୍ରାକୃତିକ ସଂପଦ ସୁରକ୍ଷା ପରିଷଦ' ।

*୨୦.୦୬.୯୬:* ଉତ୍କଳ ଆଲୁମିନା ପ୍ରକଳ୍ପ ପାଇଁ ଜମି ଅଧିଗ୍ରହଣ ଆରମ୍ଭ ହେଲା । ସ୍ଥାନୀୟ ପ୍ରଶାସନ ପକ୍ଷରୁ ଜୋରଜବରଦସ୍ତ, ଜବରଦଖଲ ଏବଂ ଭୟ ପ୍ରଦର୍ଶନ କରି ଆବଶ୍ୟକ ଦଲିଲରେ ଲୋକମାନଙ୍କର ଦସ୍ତଖତ କରାଯାଇ କ୍ଷତିପୂରଣ ପ୍ରସ୍ତାବରେ ରାଜି ହେବା ପାଇଁ ଜବରଦସ୍ତ କରିଥିଲେ ।

*୦୯.୦୯.୯୬:* ଖଣିକୁ ବିରୋଧ କରି ଉତ୍କଳ ଆଲୁମିନା ପ୍ରକଳ୍ପ ସାମ୍ନାରେ ଟିକିରିରେ ୧୦୦୦୦ ଜନସାଧାରଣଙ୍କୁ ନେଇ ସଭାର ଆୟୋଜନ କରାଯାଇଥିଲା ।

*୧୩.୦୩.୯୭:* କମ୍ପାନୀ ସପକ୍ଷରେ ଲୋକଙ୍କୁ ପ୍ରଭାବିତ କରିବା ପାଇଁ କୁଚେଇପଦରଠାରେ ଉତ୍କଳ ଆଲୁମିନା ଗୋଟାଏ ଚକ୍ଷୁ ଚିକିତ୍ସା ଶିବିରର ଆୟୋଜନ କରିଥିଲା ।

*ଜୁଲାଇ ୧୯୯୭:* ଡ଼ାମାକାରଲା ଗାଁ ନିକଟରେ ଥିବା ପୁନର୍ବାସ କଲୋନୀ ପାଇଁ ଉତ୍କଳ ଆଲୁମିନା କମ୍ପାନୀ ତାର ଘର ତିଆରି କାମ ଆରମ୍ଭ କଲା ।

*୧୦.୦୮.୯୭:* ଆଦିବାସୀଙ୍କ ତରଫରୁ ବିକ୍ଷୋଭ ପ୍ରଦର୍ଶନ କରାଯାଇ ଥଇଥାନ ହୋଇଥିବା କଲୋନୀ ପାଇଁ କାମ ବନ୍ଦ କରାଗଲା । ଏଥିପାଇଁ କୁଚେଇପଦରର ୧୬ଜଣ ଆଦିବାସୀଙ୍କ ବିରୁଦ୍ଧରେ ମିଛ ମାମଲା ଦାଏର କରାଗଲା ।

*୨୨.୧୧.୯୭:* ରାୟଗଡା କଲେକ୍ଟରଙ୍କ ଜରିଆରେ କାଶୀପୁରର ଅଧିବାସୀ ଏକ ସ୍ମାରକ ପତ୍ର ମୁଖ୍ୟମନ୍ତ୍ରୀଙ୍କୁ ଦେଇଥିଲେ ।

*୨୩.୧୧.୯୭:* ୫୦୦୦ରୁ ଉର୍ଦ୍ଧ୍ୱ ଆଦିବାସୀ କାଶୀପୁରରୁ ଉତ୍କଳ ଆଲୁମିନା ପ୍ରକଳ୍ପ ପ୍ରତ୍ୟାହାର ଦାବୀକରି ଟିକିରିରେ ପ୍ରାକୃତିକ ସମ୍ପଦ ସୁରକ୍ଷା ପରିଷଦ ଦ୍ୱାରା ବିକ୍ଷୋଭ ପ୍ରଦର୍ଶନ ପୂର୍ବକ ଏକ ରାଲିର ଆୟୋଜନ କରାଯାଇଥିଲା ।

**୦୫.୦୧.୧୯୯୮:** ମାଇନିଂ ଯାନବାହନଗୁଡ଼ିକ ପ୍ରାକୃତିକ ସମ୍ପଦ ସୁରକ୍ଷା ପରିଷଦ ଦ୍ୱାରା ଡକାଯାଇଥିବା ଲୋକଙ୍କର ଅବରୋଧକୁ ଭାଙ୍ଗିବା ପାଇଁ ପୋଲିସର ସହାୟତା ନେଇଥିଲା । ଯେତେବେଳେ ଲୋକମାନେ ବିକ୍ଷୋଭ ପ୍ରଦର୍ଶନ କଲେ ପୋଲିସ ଏକଜୁଟ ହୋଇଥିବା ଜନସମାଗମ ଉପରେ ଲୁହବୁହା ବାଷ୍ପ ଏବଂ ଲାଠିଚାର୍ଜ କରିଥିଲା ସେଥିରେ ୧୨ଜଣ ମହିଳା ଏବଂ ୩୪ଜଣ ଆଦିବାସୀ ଲୋକ କ୍ଷତବିକ୍ଷତ ହୋଇଥିଲେ ।

*୨୦.୦୪.୯୮:* ସ୍ଥାନୀୟ ଖବରକାଗଜ 'ପ୍ରଜାତନ୍ତ୍ର ଓ ଅନ୍ୟାନ୍ୟ ପତ୍ର ପତ୍ରିକାରେ ଉତ୍କଳ ଆଲୁମିନାର ସମୀକ୍ଷା ପାଇଁ ଯେଉଁ ସମ୍ବାଦ ବାହାରିଥିଲା ତାହା ଜିଲ୍ଲା ପ୍ରଶାସନ ଦ୍ୱାରା ସଂଗଠିତ ହୋଇଥିଲା । ଯେଉଁମାନେ ଏହି ଉତ୍କଳ ଆଲୁମିନା ପ୍ରକଳ୍ପ ଦ୍ୱାରା ପ୍ରଭାବିତ ହେବେ ସେମାନେ ସଭା ବର୍ଜନ କରିଥିଲେ ବୋଲି ସମ୍ବାଦର ମୁଖ୍ୟାଂଶ ହୋଇ ପ୍ରକାଶ ପାଇଥିଲା ।

*୧୬.୬.୯୮:* ଅଗ୍ରଗାମୀର 'ମଲ୍ଲିଝରଣ' ଏବଂ 'କାଶୀପୁର' କ୍ୟାମ୍ପସ ଉପରେ ପୋଲିସ ଚଢାଉ କଲା ଓ କର୍ମୀମାନଙ୍କୁ ଗ୍ରେପ୍ତାର କରି ସେମାନଙ୍କ ନାମରେ ମିଛ ମୋକଦ୍ଦମା ରୁଜୁ କରିଥିଲା ।

୨୩.୧୦.୯୮: ଆଲୁମିନା ପ୍ରକଳ୍ପକୁ ନେଇ ରାଜ୍ୟ ପ୍ରଦୂଷଣ ନିୟନ୍ତ୍ରଣ ବୋର୍ଡ଼ ଦ୍ୱାରା ଆହୂତ ଜନ ଶୁଣାଣୀକୁ ବାସନ୍ଦ କରିବା ବିବରଣୀ ସ୍ଥାନୀୟ ପତ୍ରପତ୍ରିକାରେ ପ୍ରକାଶ ପାଇଥିଲା ।

୨୪.୧୨.୧୯୯୮: 'ଅଗ୍ରଗାମୀ' ଓ ଏଲ୍.ଏନ୍.ଏସ୍.ଆର୍.ଡ଼ି ଭଳି ଦୁଇ ସ୍ୱେଚ୍ଛାସେବୀ ଅନୁଷ୍ଠାନ ଶିଳ୍ପାୟନ ବିରୋଧୀ କାର୍ଯ୍ୟ ଯୋଗୁ ସେ ଅଞ୍ଚଳରେ ବିକାଶମୂଳକ କାର୍ଯ୍ୟଗୁଡିକରେ ବାଧା ସୃଷ୍ଟି କରୁଛି ବୋଲି, ଏଇ ଦୁଇ ଅନୁଷ୍ଠାନ ପଞ୍ଜିକରଣକୁ ରଦ୍ଦ କରିବା ପାଇଁ ଏକ କାରଣ ଦର୍ଶାଅ ନୋଟିସ ଜାରି କରିଥିଲା ।

୩୧.୧୨.୯୮: ଓଡ଼ିଶା ସରକାର ୪ଗୋଟି ସ୍ୱେଚ୍ଛାସେବୀ ସଂଗଠନକୁ (ଅଗ୍ରଗାମୀ, ଅଙ୍କୁରଣ, ଲକ୍ଷ୍ମଣ ନାୟକ ଗ୍ରାମ୍ୟ ଉନ୍ନୟନ ସଂସ୍ଥା, ଏବଂ ୱିଡା) ଯେଉଁମାନେ କୋରାପୁଟ ଓ ରାୟଗଡା ଜିଲ୍ଲାରେ ଶିଳ୍ପାୟନକୁ ପ୍ରତିରୋଧ ନେଇ ନୋଟିସ ଜାରି କଲା । ଏବଂ କୌଣସି ସରକାରୀ ବିଭାଗ ଓ କାର୍ଯ୍ୟାଳୟ ସେମାନଙ୍କ ସହିତ କୌଣସି ପ୍ରକାର ସମ୍ପର୍କ ରଖିବ ନାହିଁ ବୋଲି ଅଙ୍କୁଶ ଲଗାଇଦେଲା ।

୧୧-୧୮.ଜାନୁୟାରୀ ୧୯୯୯: ଖଣି ଖାଦାନ ଯୋଗୁ କାଶୀପୁରର ସ୍ଥାନୀୟ ଜନସାଧାରଣଙ୍କ ଉପରେ ସାମାଜିକ ଓ ଅର୍ଥନୈତିକ ପ୍ରଭାବକୁ ଅଧ୍ୟୟନ ସହିତ ବାସ୍ତବ ପରିସ୍ଥିତିର ଆକଳନ ପାଇଁ ଏକ ଉଚ୍ଚ ସ୍ତରୀୟ ଅବସରପ୍ରାପ୍ତ ସରକାରୀ ଅମଲାମାନେ କାଶୀପୁର ପରିଦର୍ଶନରେ ଆସିଥିଲେ । ସେମାନେ ସରକାରଙ୍କୁ ପ୍ରସ୍ତାବ ଦେଇଥିଲେ ଏଇ ଆନ୍ଦୋଳନର ନେତାଙ୍କ ବିରୁଦ୍ଧରେ ମୋକଦ୍ଦମାସବୁ ପ୍ରତ୍ୟାହାର କରିଦେବା ପାଇଁ ଏବଂ ସେହି ଆଦିବାସୀ

ଗୋଷ୍ଠୀର ଲୋକଙ୍କ ସହିତ ଏକ ଗଠନମୂଳକ କଥାବାର୍ତ୍ତାର ଆରମ୍ଭ ପାଇଁ ସୁପାରିଶ କରିଥିଲେ ।

*୧୧.୦୬.୨୦୦୦:* ବିଭୀଷଣ ମାଝୀ, ବିଜେପିର ଏମ୍.ଏଲ୍.ଏ ନେତୃତ୍ୱରେ କାଶୀପୁରରେ ମାଇନିଂର ପୃଷ୍ଠପୋଷକତା କରିବା ପାଇଁ ଏକ ସର୍ବଦଳୀୟ କମିଟି ଗଢାଯାଇଥିଲା ।

*୨୧.୬.୨୦୦୦:* ସର୍ବଦଳୀୟ କମିଟିର ସଭ୍ୟମାନେ ମୁଖ୍ୟମନ୍ତ୍ରୀଙ୍କୁ ଭେଟି କମ୍ପାନୀକୁ ବିରୋଧ କରୁଥିବା ସ୍ୱେଚ୍ଛାସେବୀ ସଂଗଠନମାନଙ୍କ ବିରୁଦ୍ଧରେ ଦୃଢ଼ କାର୍ଯ୍ୟାନୁଷ୍ଠାନ ନେବା ପାଇଁ କହିଥିଲେ ।

*୧୫.୧୨.୨୦୦୦:* ସର୍ବଦଳୀୟ କମିଟିର ସଭ୍ୟମାନେ ଜିଲ୍ଲା ବି.ଜେ.ଡି ସଭାପତି ଭାସ୍କର ରାଓଙ୍କ ସମେତ ମାଇକଞ୍ଚକୁ ଯାଇ ଉତ୍କଳ ଆଲୁମିନା ପ୍ରକଳ୍ପ ବସୁଥିବା ପାହାଡର ଦ୍ୱାର ଦେଶରେ ଏକ ସାଧାରଣ ସଭାର ଆୟୋଜନ କରିଥିଲେ ।

*୧୬.୧୨.୨୦୦୦:* ପୋଲିସର ଗୁଳିରେ ୩ଜଣ ଆଦିବାସୀଙ୍କ ମୃତ୍ୟୁ ଯୋଗୁ ଜିଲ୍ଲା ପ୍ରଶାସନ ପକ୍ଷରୁ ୩ ପ୍ଲାଟୁନ ପୋଲିସ ମାଇକଞ୍ଚକୁ ପଠାଯାଇଥିଲା ।

*୨୦.୧୨.୨୦୦୦:* କାଶୀପୁର ବ୍ଲକ ପ୍ରବେଶ ପଥରେ ରୁପକଣା ଛକରେ ଏକତା ଏବଂ ଶାନ୍ତିପୂର୍ଣ୍ଣ ଏକ ଶୋଭାଯାତ୍ରାର ପ୍ରଦର୍ଶନ ପୂର୍ବକ ୨୦୦୦୦ ଆଦିବାସୀଙ୍କୁ ନେଇ କରାଯାଇଥିଲା ।

*ଜାନୁଆରୀ ୨୦୦୧:* ମାଇକଞ୍ଚ ଗୁଳିକାଣ୍ଡ ବିରୁଦ୍ଧରେ ସ୍ୱେଚ୍ଛାସେବୀ ସଂଗଠନ

ଏବଂ ସକ୍ରୀୟ କର୍ମୀଙ୍କ ଦ୍ୱାରା ବିକ୍ଷୋଭ ପ୍ରଦର୍ଶନ ଓ ରାଜ୍ୟ ସରକାର ଏହାର ଦମନ ପାଇଁ ବଳ ପୂର୍ବକ କାର୍ଯ୍ୟାନୁଷ୍ଠାନ ନେଇଥିଲା ।

*୨୦.୦୧.୨୦୦୧:* ମାନ୍ୟବର ବିଚାରପତି ପି.କେ. ମିଶ୍ରଙ୍କ ନେତୃତ୍ୱରେ ରାଜ୍ୟ ସରକାରଙ୍କ ଦ୍ୱାରା ଏଇ ଗୁଳିକାଣ୍ଡର ତଦନ୍ତ ଆରମ୍ଭ ହୋଇଥିଲା ।

*୧୭.୧୨.୨୦୦୧:* ଆଗୁଆ ପୁଞ୍ଜି ବିନିବେଶକାରୀ ନରସକ୍ ହାଇଡ୍ରୋ ତାର ପ୍ରକଳ୍ପର ଅଂଶଧନକୁ କାଢ଼ି ଭାଗ କରିଦେବା ପାଇଁ ସ୍ଥିର କଲା। ପରିଶେଷରେ ୨୦୦୩ରେ ଆଲ୍‌କାନ୍ ନରସକ୍‌ର କିଛି ଅଂଶ ନେଇଗଲା । ଆଲ୍‌କାନ୍‌କୁ ସମୁଦାୟ ଅଂଶର ୪୫% ଭାଗ ଦେଇ ଇଣ୍ଡାଲ ଅବଶିଷ୍ଟ ୫୫% ଅଂଶଧନ ନିଜ ହାତରେ ରଖିଛି ।

*୧୭.୧୦.୨୦୦୩:* ମାନ୍ୟବର ବିଚାରପତି ପି.କେ.ମିଶ୍ର କମିଶନ ତାଙ୍କର ବିବରଣୀ ପେଶ କରିଥିଲେ ଏବଂ କେବଳ ସରକାରଙ୍କ ତରଫରୁ ତାର ଏକ ସଂକ୍ଷିପ୍ତ ସାରାଂଶ ପ୍ରକାଶ ପାଇଥିଲା ।

*୫.୧୧.୨୦୦୩:* ହିନ୍ଦୁ ବାଣିଜ୍ୟ ଶାଖା ଇଣ୍ଡାଲ୍‌ର ସି.ଇ.ଓ ଡକ୍ଟର ଏସ୍. କେ. ଟାମୋଟିଆ କହିଲେ ସେ ଆଶାବାଦୀ ଯେ ଏହା ଚାଲୁ ରହିଛି- ଆଉ ଅଧିକ କାଳ ବିଳମ୍ବ ନକରି ଓଡ଼ିଶାରେ ଆଲୁମିନା ପ୍ରକଳ୍ପ ସଂପୂର୍ଣ୍ଣ ହେବ ।

*୧୬.୧୨.୦୩:* ମଣ୍ଡେରିଲ୍‌ରେ ୩ଜଣ ଆଦିବାସୀଙ୍କୁ ଗୁଳିକାଣ୍ଡ ଜନିତ ମୃତ୍ୟୁରେ ସମର୍ଥନ ଜଣାଇ ପ୍ରଥମ ଏକତା ଓ ସଂହତିର ପ୍ରଦର୍ଶନ ହୋଇଥିଲା । ଆଲ୍‌କାନ ତାର ପୁଞ୍ଜି ବିନିଯୋଗ ନେଇ କୌଣସି ପ୍ରକାର ସ୍ପଷ୍ଟ ମତ ଦର୍ଶାଇ ପାରିଲା ନାହିଁ ।

*୧୯.୦୩.୨୦୦୪:* ଓଡ଼ିଶାରେ ଆଲୁମିନିଅମର ପ୍ରକ୍ରିୟାକରଣ ପାଇଁ ବିରଳା ୮୫୦୦କୋଟି ଟଙ୍କାର ବିନିଯୋଗ କରିଥିଲା ବୋଲି ହିନ୍ଦୁ ବାଣିଜ୍ୟ ଶାଖା ପକ୍ଷରୁ ଏକ ବିବରଣୀ ପ୍ରକାଶ ପାଇଥିଲା । ଯେଉଁଥିପାଇଁ ଓଡିଶା ସରକାର ୮୫ ବିଲିଅନ୍ ଟନ୍‌ର ବକ୍‌ସାଇଟ ଗଚ୍ଛିତ ରହିଛି ବୋଲି ଏକ ପ୍ରମାଣ ସହିତ ଗୋଟିଏ ବକସାଇଟ୍ ମାଇନିଂ ରାୟଗଡା ଜିଲ୍ଲାରେ ଯୋଗାଇ ଦେଇଛି ।

*୧୪.୦୪.୨୦୦୪:* ପୁନଃଥଇଥାନ ଏବଂ ପୁନର୍ବାସ ପାଇଁ ଓଡିଶା ସରକାର ଉତ୍କଳ ଆଲୁମିନା ଇଣ୍ଟରନେସନାଲ୍ ଖଣି ଅଞ୍ଚଳରେ ଓ ପ୍ରକଳ୍ପ ନିକଟରେ ଆରମ୍ଭ କରି ଦେଇଛି ।

*ଜୁନ ୨୦୦୪:* ଜଷ୍ଟିସ୍ ପି.କେ. ମିଶ୍ରଙ୍କର ବିବରଣୀକୁ ବିଧାନସଭାରେ ପେଶ୍ କରାଯାଇ ରିପୋର୍ଟରେ ଥିବା ସିଦ୍ଧାନ୍ତଗୁଡିକୁ ଜନସାଧାରଣଙ୍କ ଅବଗତି ନିମନ୍ତେ ଜଣାଇ ଦିଆଗଲା ।

*୦୯.୦୯.୨୦୦୪:* କୁଚେଇପଦର ପଞ୍ଚାୟତରେ ତିନିଗୋଟି ଗାଁରେ ଜିଲ୍ଲା କଲେକ୍ଟରଙ୍କ ସହିତ, ୫୦୦ ପୋଲିସ ଫୋର୍ସ ଏବଂ ଅନେକ ସରକାରୀ କର୍ମଚାରୀମାନେ ପଲ୍ଲିସଭା ଡକାଇ ଉତ୍କଳ ଆଲୁମିନା ପ୍ରକଳ୍ପ ପାଇଁ ଜବରଦସ୍ତ ଲୋକମାନଙ୍କର ସହମତି ନିଆଯାଇଥିଲା ।

*୦୧.୧୨.୨୦୦୪* ଡ଼ମକରାଳଠାରେ ଏକ ପୋଲିସ ଫାଣ୍ଡି ତିଆରିକୁ ବିରୋଧ କରୁଥିବା ଲୋକଙ୍କୁ ପୋଲିସ ଲାଠିମାଡ କରିଥିଲା । ଅନେକ ଲୋକ ଖଣ୍ଡିଆଖାବରା ହେଲେ । ୮ଜଣଙ୍କ ମଧ୍ୟରୁ ୨ଜଣ ମହିଳା ଗିରଫ ହୋଇ ସେମାନଙ୍କୁ ରାୟଗଡ଼ା ଜେଲକୁ ପଠାଯାଇଥିଲା ।

*୧୬.୧୨.୨୦୦୪:* ବିଗତ ତିନିବର୍ଷ ଧରି ଭଲି ଅଭିଲାଶ, ରଘୁନାଥ ଓ ଜାମଧର ଆଦି ସହୀଦ୍‌ଙ୍କର ସଂହତି ଦିବସ ପାଳନ କରାଯାଉଛଇ । ମାଇନିଂ ସପକ୍ଷବାଦୀଙ୍କ ଦ୍ୱାରା ଆହୂତ ହୋଇଥିବା ଟିକିରି ଅଞ୍ଚଳରେ ଯେଉଁଠାରେ UAIL ତାର ଅଫିସ୍ ବସାଇଥିଲା, ବାମପନ୍ଥୀ ଦଳର MLA ମାନେ ଏଭଳି ଘଟଣାରେ ସାମିଲ ହୋଇନଥିଲେ ।

---

# ଜଗତୀକରଣ ଓ ଗଣହତ୍ୟା

ସଂପ୍ରତି କଳିଙ୍ଗ ନଗରରେ ପୁଲିସ୍‌ର ଗୁଳିକାଣ୍ଡକୁ ଅତି ବିସ୍ତୃତ ଭାବରେ ଅଧ୍ୟୟନ କରିବାର ଆବଶ୍ୟକତା ରହିଛି । ଟିକିଏ ଗଭୀର ଭାବରେ ନିରୀକ୍ଷଣ କଲେ ଜଣାପଡ଼େ ଯେ ଏହା ଜଗତୀକରଣ ପ୍ରକ୍ରିୟାର ଏକ ପରିପ୍ରକାଶ । ନହେଲେ ଏଭଳି ଜଘନ୍ୟ ଗଣହତ୍ୟା ହୋଇ ନଥାଆନ୍ତା । ଗୋଟିଏ ପଟେ ଜଗତୀକରଣକୁ ବିରୋଧ କରୁଥିବା ଗରିବ ଆଦିବାସୀ, ଅନ୍ୟପକ୍ଷରେ ଜଗତୀକରଣକୁ ସମର୍ଥନ ଦେଉଥିବା ସରକାର ଓ ବିଶ୍ୱପୁଞ୍ଜି । ସଂଗ୍ରାମ ଅବଶ୍ୟମ୍ଭାବୀ । ଝାଡ଼ଖଣ୍ଡର ଜଣେ ପ୍ରଖ୍ୟାତ ପ୍ରାମାଣିକ ଚଳଚିତ୍ର ନିର୍ଦ୍ଦେଶକ ଶ୍ରୀ ମେଘନାଥ "ବନ୍ଧୁକ ମୁନରେ ବିକାଶ" (Development flows from the barrel of a gun) ବୋଲି ଏକ ଚଳଚ୍ଚିତ୍ର ନିର୍ମାଣ କରିଛନ୍ତି । ଏଥିରେ ବିସ୍ଥାପିତ ଲୋକଙ୍କ ଉପରେ କିପରି ପୁଲିସ୍ ଓ ପ୍ରଶାସନ ଅତ୍ୟାଚାର କରିଛି ଓ ନିର୍ମମ ଭାବରେ ଗୁଳି କରି ମାରିଛି, ତାହାର କେତେଗୁଡ଼ିଏ ଜୀବନ୍ତ ଉଦାହରଣ ଦିଆଯାଇଛି । ଏହି ଚଳଚ୍ଚିତ୍ରରେ ୫ଗୋଟି କାହାଣୀ

ଅଛି । ପ୍ରଥମେ ମାଇକଞ୍ଚର ଗୁଳିକାଣ୍ଡ ଯେଉଁଥିରେ ମାଇନିଂ ଓ ଶିଳ୍ପ ବିରୋଧରେ ଆଦିବାସୀମାନେ ଜୀବନ ଜୀବିକା ପାଇଁ ଲଢ଼ିଛନ୍ତି ଓ ୩ଜଣ ଆଦିବାସୀ ଗୁଳି ଖାଇ ସହୀଦ୍ ହୋଇଛନ୍ତି । ଝାଡ଼ଖଣ୍ଡର କୋଏଲକାରୋ ନଦୀ ଉପରେ ନିର୍ମାଣ ହେବାକୁ ଥିବା ବୃହତ୍ତ ନଦୀବନ୍ଧ ଯୋଜନା ଯାହା ବିରୋଧରେ ଆଦିବାସୀମାନେ ଅନେକ ବର୍ଷ ଧରି ସଂଘର୍ଷ କରିଆସୁଛନ୍ତି । ତାଙ୍କ ଉପରେ ପୁଲିସ୍ ଗୁଳି ଚଳାଇ ୮ଜଣ ଆଦିବାସୀଙ୍କୁ ହତ୍ୟା କରିଛି । ମଧ୍ୟପ୍ରଦେଶର ଦେଓ୍ୱାସ ଠାରେ ଆଦିବାସୀମାନେ ଜଙ୍ଗଲ ଉପରେ ଅଧିକାରକୁ ସାବ୍ୟସ୍ତ କରିବାକୁ ଯାଇ ପୁଲିସ୍ ଗୁଳିରେ ୭ଜଣ ଶିକାର ହୋଇଛନ୍ତି । ଛତିଶଗଡ଼ରେ ବସ୍ତର ଜିଲ୍ଲାରେ ନଗରନାର ଠାରେ ବିରଳା କମ୍ପାନୀର ଏକ ଷ୍ଟିଲ୍‌ପ୍ଲାଣ୍ଟକୁ ବିରୋଧ କରି ୪୫ଜଣ ଆଦିବାସୀ ପୁଲିସ୍‌ର ଗୁଳି ଖାଇ ଆହତ ହୋଇଛନ୍ତି । ଗୁଜୁରାଟର ବନ୍ଦର ପ୍ରତିଷ୍ଠାକୁ ନେଇ ଅତ୍ୟାଚାର କରାଯାଇଛି ଓ ତାଙ୍କୁ ନେତୃତ୍ୱ ଦେଉଥିବା ଜଣେ ଅବସରପ୍ରାପ୍ତ କର୍ଣ୍ଣେଲଙ୍କୁ ପୁଲିସ୍ ପିଟି ପିଟି ହାଜତରେ ମାରିଦେଇଛି । ଏହି ଲୋମ ହର୍ଷଣକାରୀ ହତ୍ୟାକାଣ୍ଡ ଓ ଗୁଳିକାଣ୍ଡକୁ ଶ୍ରୀ ମେଘନାଥ ଏହିଭଳି ଜୀବନ୍ତ ଭାବେ ଉପସ୍ଥାପନା କରିଛନ୍ତି ଯେ, ଯିଏ ଦେଖିବ ସେ ଜଗତୀକରଣ ଦ୍ୱାରା ବିକାଶ ଓ ବିନାଶ ପ୍ରକ୍ରିୟା ସଂପର୍କରେ ମୌଳିକ ପ୍ରଶ୍ନ ନିଶ୍ଚିତ ଉଠାଇବ । ଏହି ଚଳଚ୍ଚିତ୍ର ପ୍ରତ୍ୟେକ ଲୋକ ଦେଖିବା କଥା ଓ ସରକାରଙ୍କ ନୀତି ବିରୋଧରେ ସ୍ୱର ଉତ୍ତୋଳନ କରିବା କଥା । ଏହି ଚଳଚ୍ଚିତ୍ର ବହୁତ ପୁରସ୍କାର ପାଇଲାଣି । ଯଦିଓ ଆଦିବାସୀ ଅଞ୍ଚଳରେ ଏହି ଚଳଚ୍ଚିତ୍ରଟି ବହୁତ ଲୋକପ୍ରିୟ ହୋଇଛି, କେତେକ ଯାଗାରେ ତାହା ପ୍ରଦର୍ଶିତ ହେବାକୁ ଅନୁମତି ମିଳୁନାହିଁ ।

ଓଡ଼ିଶାକୁ ଲକ୍ଷ୍ୟ କଲେ ମାଇକଞ୍ଚକୁ ଛାଡ଼ି କେତେଗୁଡ଼ିଏ ଗୁଳିକାଣ୍ଡ ଏଭିତରେ ଘଟିଯାଇଛି ଏବଂ ଅନେକ ନିରୀହ ଲୋକ ପୁଲିସ୍‌ର ଗୁଳିମାଡ଼ରେ ମୃତାହତ ହୋଇଛନ୍ତି। ୧୯୯୯ ମସିହାରେ ଗଜପତି ଜିଲ୍ଲାର ମାନ୍ଦ୍ରାବାକୁ ଜମି ଅଧିକାରକୁ ନେଇ ଆଦିବାସୀମାନେ ଯେଉଁ ଆନ୍ଦୋଳନ କରିଥିଲେ ତାଙ୍କ ଉପରେ ପୁଲିସ୍ ଗୁଳିମାଡ଼ କରିଥିଲା ଏବଂ ସେଥିରେ ମହିଳାଙ୍କ ସମେତ ୯ଜଣ ମରିଥିଲେ। ୨୦୦୦ ମସିହାରେ ଡ଼ିସେମ୍ବର ମାଇକଞ୍ଚ ଗୁଳିକାଣ୍ଡ ଘଟଣା ସମସ୍ତଙ୍କୁ ଜଣାଥିବ। ୨୦୦୧ରେ ନବରଙ୍ଗପୁର ଠାରେ ରାଇଘର ଠାରେ ଆଦିବାସୀଙ୍କର ଜମି ଅଧିକାରକୁ ନେଇ ପୁଲିସ୍ ଦୁଇଥର ଗୁଳି ଚଳାଇଥିଲା ଏବଂ ୫ଜଣ ଲୋକ ମରିଛନ୍ତି । ସେଇଭଳି ୧୯୯୯ ମସିହାରେ ଚିଲିକାରେ ପାରମ୍ପରିକ ମତ୍ସ୍ୟଜୀବିମାନେ ଜୀବନ-ଜୀବିକାକୁ ନେଇ ସୋରଣଠାରେ ଗୁଳିକାଣ୍ଡରେ ୪ଜଣ ଲୋକ ମଲେ। ଭାରତର ବିଭିନ୍ନ ଅଞ୍ଚଳରେ ଏହିଭଳି ଗୁଳିକାଣ୍ଡ ଘଟଣାର ମର୍ମସ୍ପର୍ଶୀ କାହାଣୀ ସବୁ ବିଭିନ୍ନ ସମୟରେ ପଢ଼ିବାକୁ ମିଳେ। କେରଳର ମୁଥାଙ୍ଗା ଠାରେ ଆଦିବାସୀମାନେ ଜଙ୍ଗଲ ଓ ଜମି ଉପରେ ଅଧିକାରକୁ ନେଇ ପୁଲିସ୍ ସହ ସଂଘର୍ଷ କରିଥିଲେ ଏବଂ ଏଥିରେ ଜଣେ ଆଦିବାସୀ ମରିଥିଲେ ଓ ଅନେକ ଆହତ ହୋଇଥିଲେ। ଭାରତର ଉତ୍ତର ପୂର୍ବାଞ୍ଚଳରେ ବିଭିନ୍ନ ସମୟରେ ଏହିଭଳି ପୋଲିସ୍ ଓ ସେନାବାହାନିର ଗୁଳିରେ ସେ ଅଞ୍ଚଳର ଆଦିମ ଅଧିବାସୀ ମରୁଥିବାର ଖବର ବିଭିନ୍ନ ସମୟରେ ପ୍ରକାଶିତ ହୋଇଥାଏ। ମାନବାଧିକାର ଭଙ୍ଗ ହେବା ସଙ୍ଗେ ସଙ୍ଗେ ହିଂସା ଓ ପ୍ରତିହିଂସା ଲାଗି ରହିଛି ସବୁଆଡ଼େ।

ଖାଲି ପୁଲିସ୍ ଗୁଳିକାଣ୍ଡରେ ଯେ ଆଦିବାସୀ ଓ ବିସ୍ଥାପିତ ଲୋକମାନେ ମରୁଛନ୍ତି ଏକଥା ଏତିକିରେ ସୀମିତ ରହିନାହିଁ, ପ୍ରକଳ୍ପ ହେଉ, ଖଣିଖାଦାନ ହେଉ ବା ଶିଳ୍ପ ପ୍ରତିଷ୍ଠାକୁ ନେଇ ଯେଉଁମାନେ ବାସଚ୍ୟୁତ ହେଉଛନ୍ତି ଏବଂ ଜୀବନ-ଜୀବିକାକୁ ହରାଇ ବସୁଛନ୍ତି ସେମାନେ ବହୁ ଅଳ୍ପ ସମୟ ଭିତରେ ନିଶ୍ଚିହ୍ନ ହୋଇଯାଇଛନ୍ତି। ସ୍ୱାଧୀନତା ପରଠାରୁ ପ୍ରାୟ ଅଢ଼େଇ କୋଟି ଲୋକ ବିକାଶ ପ୍ରକ୍ରିୟା ଦ୍ୱାରା ବିସ୍ଥାପିତ ହୋଇ ସାରିଲେଣି ଓ ସେମାନେ କୁଆଡ଼େ ଗଲେ ଓ କେଉଁଭଳି ନିଶ୍ଚିହ୍ନ ହୋଇଗଲେ ତାହାର ସଠିକ୍ ବିବରଣୀ କାହା ପାଖରେ ନାହିଁ। ଏହା ଏକ ଗଣହତ୍ୟା ନୁହେଁ କି ? ପୁଲିସ୍ ଗୁଳିରେ ପ୍ରତ୍ୟକ୍ଷ ଭାବେ ମରିବା ଏବଂ ଭିଟାମାଟି ହରାଇଥିବା ଓ ଜୀବନ ଜୀବିକାରୁ ବଂଚିତ ହୋଇଥିବା ଲକ୍ଷ ଲକ୍ଷ ଅସହାୟ ଲୋକ ସରକାରଙ୍କ ନୀତି ଓ ଶିଳ୍ପପତିଙ୍କ ଲୋଭ ଦ୍ୱାରା ସହଜରେ ମରିହଜି ଯିବା ଗଣହତ୍ୟାର ଏକ ମାନଚିତ୍ର। ଏକଥା କିଏ ଅସ୍ୱୀକାର କରିବ କି ?

ଜଗତୀକରଣ ପ୍ରକ୍ରିୟାର ଇତିହାସରୁ ଜଣାପଡ଼େ ଯେ ଅତି ନିର୍ମମ ଓ ଅମାନୁଷିକ ଭାବରେ ବିଶ୍ୱ ପୁଞ୍ଜି ବିଭିନ୍ନ ସ୍ଥାନରେ ଓ ବିଭିନ୍ନ ପରିସରରେ ବିଭିନ୍ନ ଧରଣର ଗଣହତ୍ୟା କରିଆସିଛି। ଉପନିବେଶବାଦ ନିଜକୁ ସଫଳ କରାଇବାକୁ ଯାଇ ଅନେକ ଦେଶରେ ଗଣହତ୍ୟାର ତାଣ୍ଡବଲୀଳା ଭଳି ଅଧ୍ୟାୟ ସୃଷ୍ଟି କରୁଛି। ଉତ୍ତର ଆମେରିକାର ଲୋହିତ ଭାରତୀୟ ହୁଅନ୍ତୁ କିମ୍ୱା ଦକ୍ଷିଣ ଆମେରିକାର ଆଦିମ ଅଧିବାସୀ କି ଅଷ୍ଟ୍ରେଲିଆର ଆଦିମ ଅଧିବାସୀ ହୁଅନ୍ତୁ ଅଥବା ଆଫ୍ରିକାର ବାସିନ୍ଦା ହୁଅନ୍ତୁ ସେଠାରେ ବନ୍ଧୁକ

ମୂନରେ ଉପନିବେଶବାଦ ତା'ର ରାଜତ୍ୱ ବିସ୍ତାର କରୁଛି। ଲକ୍ଷ ଲକ୍ଷ ଲୋକ ଓ କେତେକ କ୍ଷେତ୍ରରେ ଗୋଟାଏ ଗୋଟାଏ ଜାତି ଓ ସଭ୍ୟତା ସଂପୂର୍ଣ୍ଣ ଲୋପପାଇ ଯାଇଅଛି। ଆଜି ନବ-ଉପନିବେଶବାଦ କେମିତି ସେହି ପୁରୁଣା ଐତିହାସିକ ଢ଼ାଞ୍ଚାରେ ମୁଣ୍ଡ ଟେକିଛି ତାକୁ ପୃଥିବୀର ବର୍ତ୍ତମାନ ସମୟର ବିଶିଷ୍ଟ ବୁଦ୍ଧିଜୀବି ନୋଅମ୍ ଚୋମସ୍କି (Noam Chomski)ତାହାର ଏକ ବିଶ୍ଳେଷଣ କରିଛନ୍ତି। ଜଗତୀକରଣ ପ୍ରକ୍ରିୟା ଦ୍ୱାରା ଗଣହତ୍ୟା କିପରି ବ୍ୟାପକ ହେଉଛି ଗତ କେତେବର୍ଷ ହେଲା ପୃଥିବୀର ଇତିହାସ ଓ ଭୂଗୋଳକୁ ଅଧ୍ୟୟନ କଲେ ସହଜରେ ଜଣାପଡ଼ିବ। ୧୯୮୮ ମସିହାରେ ଆମାଜନର ଘଞ୍ଚ ଜଙ୍ଗଲରେ 'ଚିକୋ ମେଣ୍ଡିସ୍' ଦକ୍ଷିଣ ଆମେରିକାର ବର୍ଷା ଅରଣ୍ୟର ସଂରକ୍ଷଣ ପାଇଁ ଲଢୁଥିଲେ ଏବଂ ସ୍ଥାନୀୟ ଆଦିବାସୀମାନଙ୍କର ସ୍ୱାର୍ଥ ପାଇଁ ଲଢୁଥିଲେ। କିନ୍ତୁ, ବର୍ଷା ଅରଣ୍ୟକୁ କାଟି ସଫା କରି କୃଷି, ପଶୁପାଳନ ଓ ର୍ୟାଞ୍ଚ (Ranch)ପ୍ରତିଷ୍ଠା ପାଇଁ ପୁଞ୍ଜିପତିମାନେ ଚିକୋ ମେଣ୍ଡିସ୍‌କୁ ହତ୍ୟା କରିଥିଲେ। ଏହାପରେ ବର୍ଷା ଅରଣ୍ୟ ସବୁ ଧ୍ୱଂସ କରିବା ପାଇଁ ପ୍ରତିଯୋଗିତା ଆରମ୍ଭ ହୋଇଗଲା। ପରିବେଶ ଓ ସ୍ଥାନୀୟ ଆଦିମ ଅଧିବାସୀମାନେ ଏହାଦ୍ୱାରା ପ୍ରଭାବିତ ହୋଇଥିଲେ।

ଫିଲିପାଇନସ୍‌ର ମିରାଣ୍ଡୁକୀ ଦ୍ୱୀପରେ କାନାଡ଼ା ଦେଶର ଏକ ମାର୍କକପର (Marcoppur) ନାମକ ଏକ ମାଇନିଂ କମ୍ପାନୀ ତମ୍ବା ଖଣି ପାଇଁ ଲିଜ୍ ପାଇଥିଲା। ଖଣିଜ ପଦାର୍ଥକୁ ବିଶୋଧନ କରି ତମ୍ବା ବାହାର

କଲାବେଳେ ଅନେକ ବିଷାକ୍ତ ବର୍ଜ୍ୟବସ୍ତୁ ବାହାରୁଥିଲା, ଯାହା ସ୍ଥାନୀୟ ଜନବସତି ଏବଂ ଉଦ୍ଭିଦ ଓ ପ୍ରାଣୀଜଗତ ଉପରେ ପ୍ରଭାବ ପକାଇଥିଲା। ଏହି ବର୍ଜ୍ୟବସ୍ତୁ ଦ୍ୱାରା ଶହ ଶହ ଲୋକେ ଆକ୍ରାନ୍ତ ହୋଇଥିଲେ। ସୁନ୍ଦର ହେନ୍ତାଳ ବନ ନଷ୍ଟ ହୋଇଥିଲା। ମତ୍ସ୍ୟଜୀବିଙ୍କୁ ମାଛ ମିଳିନଥିଲା। ଏବେସୁଦ୍ଧା ଅନେକ ବ୍ୟକ୍ତି ଚିକିତ୍ସିତ ହେଉଛନ୍ତି।

ଆଫ୍ରିକାର ନାଇଜେରିଆରେ ପେଟ୍ରୋଲିୟମ କମ୍ପାନୀ ସେଲ୍ (Shell) ଅଗୋନି ନାମକ ଏକ ଆଦିବାସୀ ସଂପ୍ରଦାୟମାନଙ୍କର ଜଳ ଜମି ଓ ଜଙ୍ଗଲ ଉପରେ କର୍ତ୍ତୃତ୍ୱ ବିସ୍ତାର କରି ପେଟ୍ରୋଲିୟମ୍ ଗ୍ୟାସ୍ ଉତ୍ପାଦନ କରୁଥିଲା। ଏଥିପାଇଁ ଅନେକ ଆନ୍ଦୋଳନ ଚାଲୁଥିଲା ଏବଂ ଅଗୋନିମାନଙ୍କର ଅପୂରଣୀୟ କ୍ଷତି ହୋଇଥିଲା। ନାଇଜେରିଆ ସରକାର ଏବଂ ସେଲ୍ କମ୍ପାନୀ ସବୁ ଲାଭ ମାରି ନେଉଥିଲେ ଏବଂ ଅଗୋନିମାନଙ୍କୁ କିଛି ବି ଦେଉନଥିଲେ। ଏହି ଆନ୍ଦୋଳନକୁ ବୌଦ୍ଧିକ ସମର୍ଥନ ଦେଇଥିବା ନାଇଜେରିଆର ବିଖ୍ୟାତ କବି ଓ ବୁଦ୍ଧିଜୀବି କେନ୍ ସାର ୱିବାଙ୍କୁ ମୃତ୍ୟୁଦଣ୍ଡ ଦିଆଯାଇଥିଲା। କେତେଯେ ଅଗୋନି ସଂପ୍ରଦାୟର ଲୋକ ସେଲ୍ କମ୍ପାନୀ ଦ୍ୱାରା ନିଶ୍ଚିହ୍ନ ହୋଇଛନ୍ତି ତାହା ଆକଳନ କରିବା କଷ୍ଟସାଧ୍ୟ।

କାନାଡ଼ାର ଓଲ୍ଲାଷ୍ଟୋନ ହ୍ରଦ ଚାରିପାଖରେ ବାସ କରୁଥିବା ଲୋହିତ ଭାରତୀୟମାନେ ଏକ ୟୁରାନିୟମ ଖଣି ଏବଂ ବିଶୋଧନ ଦ୍ୱାରା ପ୍ରଭାବିତ ହୋଇଥିଲେ। ଏହା ପାଇଁ ଏକ ବ୍ୟାପକ ଆନ୍ଦୋଳନ ହୋଇଥିଲା। ଏଥିରେ ଖାଲି ପରିବେଶ ପ୍ରଦୂଷଣ ହୋଇନଥିଲା ସ୍ଥାନୀୟ ଲୋକଙ୍କର ଖାଦ୍ୟ

ନିରାପତ୍ତା ଓ ସ୍ୱାସ୍ଥ୍ୟ ନିରାପତ୍ତା ବ୍ୟାହତ ହୋଇଥିଲା । ଖାଦ୍ୟ ମଣିଷ ଜୀବନର ମୂଳଦୁଆ । ପ୍ରଦୂଷିତ ଖାଦ୍ୟ ଭକ୍ଷଣ ଏହି ଲୋହିତ ଭାରତୀୟଙ୍କ ମଧ୍ୟରୁ ଅନେକଙ୍କର ମୃତ୍ୟୁର କାରଣ ହୋଇଥିଲା ।

ପାପୁଆ ନିଉଗିନିରେ ସୁନା, ତମ୍ବା ଓ ପେଟ୍ରୋଲିୟମ୍ ଗ୍ୟାସ୍‌ର ବିଶାଳ ଭଣ୍ଡାର ଅଛି । ଏହା ସହିତ ଅଛି ଘଞ୍ଚ ବର୍ଷା ଅରଣ୍ୟ । ଏହା ଉପରେ ଦୃଷ୍ଟି ପଡ଼ିଛି ବିଶ୍ୱର ସବୁ ପୁଞ୍ଜିପତିମାନଙ୍କର ଏବଂ ପୁଞ୍ଜିପତି ରାଷ୍ଟ୍ରର । ଇଣ୍ଡୋନେସିଆର ସାମରିକ ବାହୀନିର ସହାୟତା ନେଇ ସେଠାରେ ଚାଲିଛି ଗଣହତ୍ୟା । ପାପୁଆକୁ ଛୁଟିଛି ବାହାର ମଣିଷଙ୍କର ସୁଅ ଓ ଯେଉଁମାନେ ଇଣ୍ଡୋନେସିଆର ମୂଳ ଜାଭା, ବାର୍ଲି ଦ୍ୱୀପମାନଙ୍କରୁ ଆସି ବସତି ସ୍ଥାପନ କରିଛନ୍ତି ସେମାନେ ବାସ କରି ଆସୁଥିବା ପାପୁଆର ମୂଳ ଆଦିବାସୀମାନଙ୍କୁ ଘଞ୍ଚ ଅରଣ୍ୟ ମଧ୍ୟକୁ ଠେଲି ଦେଇଛନ୍ତି । ଖଣିଖାଦାନରେ କାମ କରୁଥିବା ଆଦିବାସୀମାନେ ଏତେ ସଂଖ୍ୟାରେ ପହଞ୍ଚିଛନ୍ତି ଏଡ୍‌ସ୍, ଏଚ୍.ଆଇ.ଭି. ରୋଗ ବଢ଼ିବାରେ ଲାଗିଛି । ପାପୁଆର ଆଦିମ ଅଧିବାସୀମାନେ ଯେଉଁ ସଂଖ୍ୟାରେ ମରିବାକୁ ଆରମ୍ଭ କରିଛନ୍ତି, ତାହାକୁ ଗଣହତ୍ୟା ନକହି ଆଉ କ'ଣ ବା କୁହାଯିବ ?

ଗଣହତ୍ୟା କରିବା ପାଇଁ ଗୋଟାଏ ପ୍ରଭାବଶାଳୀ ଓ ପ୍ରତିପତ୍ତିଶାଳୀ ଗୋଷ୍ଠୀ ସବୁବେଳେ ଯେମିତି ତତ୍ପର ହୋଇରହିଛି । ଇତିହାସକୁ ଅଧ୍ୟୟନ କଲେ ଏହିକଥା ସହଜରେ ବୁଝିହୁଏ । ଭବିଷ୍ୟତରେ ଗଣହତ୍ୟାର ରୂପରେଖ ଓ ବିସ୍ତୃତି ସ୍ପଷ୍ଟ ବାରିହୁଏ । ଜର୍ମାନର ନାଜୀମାନେ ଇହୁଦୀମାନଙ୍କୁ ଗଣହତ୍ୟା

କରି ଭାବୁଥିଲେ ଯେ ସେମାନେ ଅନ୍ୟମାନଙ୍କ ଠାରୁ ଉଚ୍ଚଜାତିର । ଏହିଭଳି ଏକ ଭୂତ ଆଜି ଯେପରି ପୃଥିବୀର ଅଣଆଦିବାସୀମାନଙ୍କ ଭିତରେ ପଶିଯାଇଛି । ସେମାନେ ଭାବୁଛନ୍ତି ଯେଉଁମାନେ ଉଚ୍ଚଜାତିର ଏବଂ ଉଚ୍ଚ ବୌଦ୍ଧିକତାର, ସେମାନଙ୍କ ପାଖରେ ଆଦିବାସୀ ଓ ଗରିବମାନଙ୍କର ଧନ, ଜୀବନ ଅଧିକାରରେ ରହିଛି । ତେଣୁ ଏହାକୁ ସାବ୍ୟସ୍ତ କରିବାକୁ ଯାଇ ଗଣହତ୍ୟାରେ ସାମିଲ ହେଉଛନ୍ତି ଓ ଏଭଳି ଏକ ଅମାନୁଷିକ ଘଟଣାକୁ ସମର୍ଥନ କରୁଛନ୍ତି । ଆଜି କଳିଙ୍ଗ ନଗରରେ ଯାହା ଘଟିଛି ତାହା ଏହିଭଳି ଏକ ଭାବନାର ପରିପ୍ରକାଶ କେବଳ ।

---

# କଳିଙ୍ଗ ନଗର : ଆଖିଦେଖା ହାଲ୍

'ସେ ମୋ ଭଉଣୀ ଆଉ ଏମାନେ ମୋର ଝିଆରୀ' ସେ ଏକା ସ୍ୱରରେ ସେମିତି କହୁଥିଲା ଯେତେବେଳେ ଆମେ କଳିଙ୍ଗ ନଗର ନର ସଂହାରରେ ନିହତ ଶବମାନଙ୍କ ପାଖରେ ଛିଡା ହୋଇଥିଲୁ । ତା ମୁହଁରେ ଗୋଟିଏ ଅଭାବନୀୟ ଦୁଃଖ ଓ ଗ୍ଲାନିର ଛାପଟିଏ ଲାଗିରହିଥିଲା । ମୋ ସାଙ୍ଗରେ ଯାଇଥିବା ବାନ୍ଧବୀ ତାର କ୍ୟାମେରାରେ ମୃତକମାନଙ୍କର ଅନେକ ଗୁଡିଏ ଫଟୋ ଉଠାଇବାକୁ ଲାଗିଲେ । ସେଠି ଜମା ହୋଇଥିବା ଲୋକମାନେ ଫଟୋଉଠାଇବାକୁ ସାହାଯ୍ୟ କରିବାକୁ ଯାଇ ମୃତକମାନଙ୍କ ଘୋଡିହୋଇଥିବା ମୁହଁକୁ ଟିକେ ଟିକେ ଆଡେଇ ଦେଲେ । ପ୍ରଥମ ମହିଳା ଜଣକ ଶୋଇଥିଲାଭଳି ଲାଗିଲା କିନ୍ତୁ ଦ୍ୱିତୀୟ ମହିଳା ଜଣକ ଟିକିଏ ବିଭତ୍ସଭାବରେ ବେଖାପ ଚିତ୍ରଟିଏ ଟେକି ଧରିଲା । ଗୁଳି ତାର ନାକ ଓ ଉପର ପାଟିକୁ ବିଲକୁଲ ଖିନଭିନ୍ନ କରିଦେଇଥିଲା । ମୁହଁ ଉପରେ ପଡିଥିବା କପଡାରେ ରକ୍ତ ଛିଟା ଦାଗ ଶୁଖି କଳା ପଡିଯାଇଥିଲା । 'ସେ କେତେବେଳେ ଯାଏଁ ମୃତ୍ୟୁକୁ ଆବୋରି ନେବାକୁ ସଂଘର୍ଷ କରିଥିଲା

କେଜାଣି' -ମୁଁ ଭାବୁଥିଲି । ଅନ୍ୟ ଦୁଇଜଣ ମୃତକ ପୁରୁଷ ଥିଲେ । ସେଠି ଲୋକ କୁହାକୁହି ହେଉଥିଲେ- "କେଜାଣି କେତେ ମଲାଲୋକଙ୍କୁ ପୋଲିସ ତାର ଜିପ୍‌ରେ ବୋହିନେଲା, କିନ୍ତୁ ଏଇଠି ୧୩ ଜଣ ଲୋକ ମରିଯିବା ଆମେ ଜାଣିଛୁ ।" ଡାକ୍ତରଖାନା ଯାଇ ବିବରଣୀ ସଂଗ୍ରହ କରିବାକୁ ପହଞ୍ଚିଲା ବେଳେ ଜଣାଗଲା ଯେ ୨ ଜଣ ଡାକ୍ତରଖାନାକୁ ଆସିଥିଲା ବେଳେ ଓ ଆଉ ଜଣେ ଡାକ୍ତରଖାନାରେ ଗୁଳିକାଣ୍ଡ ଘଟଣାରେ ମରି ଯାଇଛନ୍ତି ।

କଳିଙ୍ଗ ନଗର ଯିବା ବାଟକୁ ଲୋକମାନେ ଅବରୋଧ କରିଥିଲେ । ଆମର ପରିଚୟକୁ ପରଖ କରି ଘଟଣା ଜାଗାକୁ ସେମାନେ ଛାଡିଥିଲେ- ଅବରୋଧ କରିଥିବା ଲୋକମାନଙ୍କ ସାଙ୍ଗରେ ଗପସପ କରିପାରି ନଥିଲେ- କାରଣ ସେମାନେ କହିଥିଲେ- 'କେବଳ କମିଟି ଲୋକ ଆପଣମାନଙ୍କ ସହିତ ଆଲୋଚନା କରିପାରିବେ ।' ଆମେ ସେଠିକୁ କ'ଣ ଯାଇ ପାରିବୁ ନାହିଁ-ପଚାରିଲୁ । କାହିଁକି ନୁହେଁ- ଆପଣମାନେତ ଖବର କାଗଜରୁ ଆସିଛନ୍ତି । ଆମ ସହିତ ଥିବା 'ରବି'- ସେ ଅଞ୍ଚଳରେ ଜଣେ ସକ୍ରିୟ କର୍ମୀ ଭାବରେ ଜଣାଶୁଣା- ଆମର ପ୍ରେସ୍ ପରିଚୟପତ୍ର ଦରକାର ପଡିଲାନାହିଁ । ଯଦିଓ ଆମ ପାଖରେ ସେମିତି କିଛି ପ୍ରେସ୍ କାର୍ଡ ଆଦି ନଥିଲା । ଆମେ ଯାଉଥିଲା ସମୟରେ ବିରୋଧୀ ଦଳର ଲୋକମାନେ ଗାଡିମୋଟରରେ ବୋଝେଇ ହୋଇ ସେ ଜାଗାକୁ ଯାଉଥିବାର ଆମେ ଦେଖିଲୁ । ପୁନଶ୍ଚ ରାସ୍ତାରେ ଯୁଆନ ଭେଣ୍ଡିଆମାନେ ଲାଠିବାଡି ଧରି ଯିବା ଆସିବା ମଧ୍ୟ କରୁଥିଲେ- ଭାଷଣ ବାଜିର ଗର୍ଜନ ମଧ୍ୟ ତୁହାକୁ ତୁହା ଶୁଣାଯାଉଥିଲା- "ନବୀନ ପଟ୍ଟନାୟକଙ୍କୁ କହି ଦିଅ- ଗୁଳିଚଳାଇଥିବା ପୋଲିସ ବାଲାଙ୍କୁ

ମାରିଦିଆଗଲେ, ଆମେ ମଧ୍ୟ ଏକଲକ୍ଷ ଟଙ୍କା ଦେଇଦେବୁ ।' ଶେଷରେ ଆମେ ଘଟଣା ଜାଗାରେ ପହଞ୍ଚିଲୁ । ସେଠି ଚାରୋଟି ଦଉଡିଆ ଖଟରେ ମୃତକମାନଙ୍କୁ ଶୁଆଇ ଦିଆଯାଇଥିଲା । ସ୍ତ୍ରୀ ଲୋକମାନେ କିପରି ପୋଲିସ ଗୁଳିରେ ଟଳି ପଡିଲେ- ମୁଁ ପଚାରିଲି । ହଠାତ ସେମାନଙ୍କର ବନ୍ଧୁକ ଗର୍ଜି ଉଠିଲା- ଏଇ ମୃତକ ମହିଳାମାନେ ଆଗରେ ଥିଲେ । ଏଥିରୁ ଅନୁମାନ ହେଉଛି ଯେ, ଲୋକମାନେ ସଂଗଠିତ ଭାବରେ ଆଗେଇ ଯିବାକୁ ପ୍ରସ୍ତୁତ ନଥିଲେ । ପାଚେରି କାମ ଆରମ୍ଭ ହେବା ଖବର ଶୁଣି ସେମାନେ ବୁଲଡୋଜର କାମକୁ ବନ୍ଦ କରିବାକୁ ଆସିଥିଲେ । ସେଠି ୬୦୦ରୁ୭୦୦ ଶହ ପୋଲିସ ଫଉଜ ଥିଲାବେଳେ- ଆମେ କେବଳ ମାତ୍ର ୨୦୦ଜଣ ଖଣ୍ଡେ ସେଠିଥିଲୁ- ସେମାନେ କହୁଥିଲେ । ବାସ୍ତବରେ ପୋଲିସ ଫଉଜ ସଂଖ୍ୟାକୁ ମୋଟେ ଅତିରଞ୍ଜନ କରାଯାଇ ନାହିଁ । ପୋଲିସ କହିବା ଅନୁସାରେ ୧୪ ପ୍ଲାଟୁନ ସେଠି ସମବେତ ଥିଲେ- ସେଠିକାର ଶୁଣିବା ବିବରଣୀ ଅନୁସାରେ ଏଇ ସଂଖ୍ୟା ୨୭ପ୍ଲାଟୁନ ବୋଲି ଲୋକେ କହୁଥିଲେ । ସେମାନେ ସବୁ ଘଟଣା ଦିନ ( ୨ , ଜାନୁଆରୀ) ସକାଳ ସମୟରେ ସେଠିକୁ ବୁହାହୋଇ ଆସିଥିଲେ । ଏହା ଆଗରୁ ଡୁବୁରୀ ଥାନା ପରିସରରେ ସପ୍ତାହ ଆଗରୁ ସେମାନେ ସବୁ କ୍ୟାମ୍ପ କରି ରହିଥିଲେ । ସେମାନେ ଆସି କାମ ହେଉଥିବା ଜାଗାକୁ ଘେର ପକାଇ ରଖିଥିଲେ । ପୋଲିସର ଗୁଳିଚାଳନା ବିକ୍ଷିପ୍ତ ଓ ଇତସ୍ତତଃ ଭାବରେ କରାଯାଇଥିଲା । ଉପସ୍ଥିତ ଲୋକମାନଙ୍କର ମୁହଁରେ, ତଳିପେଟରେ ଗୁଳିମାଡ ହୋଇଥିଲା । ଛୋଟ ପିଲାମାନଙ୍କର ମୁହଁରେ ଗୁଳିମାଡ ଚିହ୍ନର ଦାଗ ରହିଛି ବୋଲି- ସେମାନେ କହୁଥିଲେ ।

ଲୋକମାନେ ଭୀତତ୍ରସ୍ତ ହୋଇ ବିମର୍ଷ ଅବସ୍ଥାରେ ଥିଲା ସମୟରେ ଗୁଳିକାଣ୍ଡ ଘଟଣାର ଏକ ସିଧାସଳଖ ବିବରଣୀ ସଂଗ୍ରହରେ ଅସୁବିଧା ଥିଲା । କିନ୍ତୁ ଏହାସତ୍ତ୍ୱେ ସେମାନଙ୍କର 'ଲକ୍ଷ୍ୟ ଓ ଉଦ୍ଦେଶ୍ୟ' ସେଇ ଗୋଟିଏ ପ୍ରକାରର ଥିଲା । 'ଟାଟା କମ୍ପାନୀ ଏଠୁ ହଟିଯାଉ- ସରକାର ଗାଁ ଲୋକମାନଙ୍କୁ ଶାନ୍ତିରେ ରହିବାକୁ ଦେଉ' । ଆଖପାଖ ଗାଁର ୬୦୦ ଜଣ ଲୋକଙ୍କୁ ବେଘର କରାଯାଇଛି । ସେମାନେ ପଥର ଗୁଣ୍ଡ କରିବା ମେସିନ କାମରେ କାମକରି ବଞ୍ଚି ରହିଛନ୍ତି । ଏ ଜାଗାରେ ପଥର ଗୁଣ୍ଡ କରିବା ମେସିନ୍‌ସବୁ ଚାରିଆଡେ ବିକ୍ଷିପ୍ତ ହୋଇ ଗଢିଉଠିଛି । ପଥରଗୁଣ୍ଡ ଉଡି ବୁଲୁଥିବାର ଏ ଅଞ୍ଚଳରେ ଗଛବୃଛ କାଁ ଭାଁ ଦେଖା ଯାଉଥିଲା- ଯେଉଁ ଗୋଟିଏ ଦୁଇଟା ଛିଡା ହେବାର ଦେଖାଯାଉଥିଲା- ସେଗୁଡିକ ଶେତା ପଡିଯାଇ ଧୂସୁରିଆ ଦେଖାଯାଉଥିଲା ।

'ବିସ୍ଥାପନ ବିରୋଧୀ ମଞ୍ଚ' ସୁସଂଗଠିତ ଭାବରେ ରାସ୍ତା ଅବରୋଧ ଆନ୍ଦୋଳନକୁ ପରିଚାଳନା କରୁଥିଲେ । ସବା ଆଗଧାଡିରେ ବିସ୍ଥାପନ ମଞ୍ଚ ସ୍ୱେଚ୍ଛାସେବୀମାନେ ଆସୁଥିବା ଲୋକମାନଙ୍କର ପରିଚୟ ଯାଞ୍ଚ କରୁଥିଲେ- ଠିକ୍ ଲୋକକୁ ଭିତରୁ ଯିବାକୁ ଛାଡୁଥିଲେ । ସରକାରଙ୍କ ତରଫରୁ କୌଣସି ଲୋକଙ୍କୁ ଯିବାକୁ ଛଡାଯାଉନଥିଲା । କିଛି ଦୂରରେ ଅବରୋଧ ପକାଇଥିବା ଲୋକମାନଙ୍କ ରନ୍ଧାରନ୍ଧିର ବ୍ୟବସ୍ଥା ଥିଲା- ସେଠୁ ଖାଦ୍ୟ ଆସି ଅବରୋଧକାରୀ ଲୋକମାନଙ୍କୁ ଖାଦ୍ୟ ପରସା ଯାଉଥିଲା । ଯୁବପୀଢିର ପୁଅ ଝିଅମାନେ ଲାଠିଧରି ଯିବା ଆସିବା କରୁଥିଲେ- ସେ

ଅଞ୍ଚଳରେ ଉଷ୍ଣତା ଥିବା ସତ୍ତ୍ୱେ କୌଣସି କଥା ହାତ ବାହାରକୁ ଚାଲିଯାଇନଥିଲା । ଘଟଣାରେ ଜଖମ ହୋଇଯାଇଥିବା ଲୋକମାନଙ୍କୁ କଟକ ନିଆଯାଇଥିଲା- ସେଠି ପାଳିକରି ବିସ୍ଥାପନ ସଂଗଠନର ସ୍ୱେଚ୍ଛାସେବୀମାନେ ସେବା ଯୋଗାଇଦେଇ ଚାଲିଥିଲେ । ଜଖମ ହୋଇ ଥିବା ଲୋକମାନଙ୍କର ପାଖ ଲୋକମାନେ- ଖର୍ଚ୍ଚ ହୋଇଥିବା ପଇସାପତ୍ର- ଗାଡି ମଟର ଖର୍ଚ୍ଚ ପାଇଁ ବିଚଳିତ ନଥିଲେ । ଏସବୁ ଖର୍ଚ୍ଚ ବିସ୍ଥାପନ ମଞ୍ଚ ବ୍ୟୟ କରିଛି ବୋଲି ସେମାନେ କହିଥିଲେ । ଯଦି ଅବା ଘଟଣା ଜାଗାରେ ଆଇନ ଶୃଙ୍ଖଳା ଭୁଶୁଡି ପଡିଥିଲା- ସେସବୁ ସରକାରଙ୍କ ଦ୍ୱାରା ହିଁ ହୋଇଥିଲା ।

ଯୁବକମାନ ଧନୁତୀର ଧରି ଯିବା ଆସିବା କରୁଥିଲେ । ପୋଲିସ ବନ୍ଧୁକ ଆଗରେ ଏହା ମୂଲ୍ୟହୀନ ବୋଲି ଯାଣିଥିଲେ ସୁଦ୍ଧା- ସେ ଏହାକୁ କାନ୍ଧରେ ପକାଇ ଥିଲେ- କାରଣ କାଳକାଳରୁ ସାଥି ଦେଇ ଆସିଥିବା ଏଇ ହତିଆର ସେମାନଙ୍କୁ ଉତ୍ସାହ ଦେଇଥାଏ ବୋଲି ସେମାନେ କହୁଥିଲେ । ଚଢେଇ ପରଗୁଡା ତୀରର ଲକ୍ଷ୍ୟ ଅବ୍ୟର୍ଥ ବୋଲି ମଧ୍ୟ ସେମାନେ କହୁଥିଲେ । ଘଟଣା ଯାଗାରେ ପୋଲିସ ଫଉଜ ନଥିଲେ । ଗୁଳିକାଣ୍ଡ ଜାଗାଟା ପରିତ୍ୟକ୍ତ ଥିଲା । ସରକାର ବାହାଦୂର- ଯିଏକି ଲୋକମାନଙ୍କ ଦ୍ୱାରା ନିର୍ବାଚିତ ହୋଇଛନ୍ତି- କଣ ଏମାନଙ୍କ କଥା ଶୁଣିବେ !

କଟକ ମେଡିକାଲ ହସପିଟାଲର ଗୋଟିଏ ୱାର୍ଡରେ ଉଭୟ ଜଖମ ଗୁର୍ଖା ପୋଲିସ କର୍ମଚାରୀ ଓ ଆନ୍ଦୋଳନକାରୀ ରହି ଚିକିତ୍ସିତ ହେଉଥିଲେ ।

୪ଜଣ ପୋଲିସ କର୍ମଚାରୀ ଲଗାଲଗିକରି ଚାରୋଟି ଖଟରେ ଥିଲାବେଳେ- ଆନ୍ଦୋଳନକାରୀମାନେ ବିକ୍ଷିପ୍ତ ଭାବରେ ଇତସ୍ତତଃ ଥିଲେ । ଲୋକମାନଙ୍କର କ୍ଷତ ଖୁବ୍ ସାଂଘାତିକ ଥିଲା- ମୁଁ ଅନୁମାନ କରୁଥିଲି- ଏମାନେ ହୁଏତ କ୍ଷତକୁ ସମ୍ଭାଳିନେଇ ବଞ୍ଚି ପାରିବେ ନାହିଁ । ଡାକ୍ତରଖାନାରେ ସେବାରତ ନର୍ସ, ଶିକ୍ଷାନବୀଶ ଡାକ୍ତରମାନଙ୍କର ସେବା ଉତ୍ସାହଜନକ ଥିଲା । ଯାହାର ରକ୍ତ ଦରକାର ପଡିବ ସେମାନଙ୍କୁ ଚିହ୍ନଟ କରାଯାଇଥିଲା । କିନ୍ତୁ ଥରେ ଗଣମାଧ୍ୟମ ଆଉ ଲୋକମାନଙ୍କର ଧ୍ୟାନ ଊଣା ପଡିଗଲେ- ଏମାନଙ୍କୁ କଣ ଏମିତି ଯତ୍ନ ଆଉ ଯୋଗାଇ ଦିଆଯିବ !

ଆମେ ସେଠି ଥିଲାବେଳେ, ଅଲଗା ଅଲଗା ଦଳର ରାଜନେତାମାନେ ଆସି ଶଯ୍ୟାଶାୟୀମାନଙ୍କ ଉପରେ- କ୍ୟାମେରା ଲେନ୍ସ ଆଗରେ ଝୁଙ୍କିପଡି ଖବର ପଚରାପଚରି କରୁଥିଲେ- କ୍ଷତବିକ୍ଷତ ଲୋକମାନଙ୍କର ପାଖରେ ଥିବା ଆତ୍ମୀୟ ସ୍ୱଜନମାନେ ଏହିଭଳି ହତଚକିତ ଭାବରେ ଦେଖୁଥିଲାବେଳେ ରାଜନେତା ପାଖ ଶଯ୍ୟାରେ ଟିଡି କ୍ୟାମେରା ଆଗରେ ତାଙ୍କର ବୁଝାମଣା କଥାକୁ ପୁନରାବୃତ୍ତି କରିଚାଲିଥିଲେ ।

୧୨୦୦୦ଏକର ଯାଗାକୁ ନେଇ କଳିଙ୍ଗନଗର ଶିଳ୍ପାଞ୍ଚଳ ପରିସର ଗଢାଯାଇଛି- ଯାଜପୁର ଜିଲ୍ଲାରେ ଅବସ୍ଥିତ ଏଇ ଶିଳ୍ପାଞ୍ଚଳରେ କାରଖାନା ପ୍ରତିଷ୍ଠା ପାଇଁ ଜମି ଯୋଗାଇଦେବା ପାଇଁ IDCOL କୁ ଦାୟିତ୍ୱ ଦିଆଯାଇଛି । IDCOL ଏଥିପାଇଁ ଜମି ଅଧିଗ୍ରହଣ ନିୟମ ବଳରେ ଜମି ସବୁ ଅକ୍ତିଆର କରିଛି- ଏଇ ଜମି ଅଧିଗ୍ରହଣ ପାଇଁ କ୍ଷତିପୂରଣ କେବଳ ପଟ୍ଟାଥିବା ଜମି ମାଲିକମାନଙ୍କୁ ୧୦ଡିସିମିଲି ଜମି କ୍ଷତିପୂରଣ ହିସାବରେ

ଦିଆଯାଇଛି । କିନ୍ତୁ ଏଇ ଅଞ୍ଚଳର ଆଦିବାସୀ ଚାଷୀମାନେ ଅଣପଟ୍ଟାଜମି ଚାଷବାସ କରି ଆସୁଛନ୍ତି । ଭୁଲ ବନ୍ଦୋବସ୍ତ କାରଣ ଯୋଗୁଁ ଏଇ ବହୁଦିନରୁ ଚାଷବାସ ଜମିସବୁ ଚାଷୀମାନଙ୍କ ସପକ୍ଷରେ ଦରଜ କରାଯାଇନାହିଁ । ଏଇ ଚାଷୀମାନେ ଯଦିଓ ସମ୍ପୂର୍ଣ୍ଣଭାବରେ ଜମିଉପରେ ନିର୍ଭରକରି ତାଙ୍କର ଜୀବନ ଓ ଜୀବିକା ଚଳେଇ ଥାଆନ୍ତି- ଏଇ ଜମି ବଦଳରେ ସେମାନଙ୍କୁ କ୍ଷତିପୂରଣ ବାବଦରେ ଅର୍ଥ ଦିଆଗଲା ନାହିଁ । ଅଥଚ ଗୋଟାକ ପରେ ଗୋଟାଏ କାରଖାନା ଏଠି ବସିବାକୁ ଲାଗିଲା । ନୀଳାଚଳ ଇସ୍ପାତ ନିଗମ, ମେସ୍କୋ, ଜିନ୍ଦାଲ ଆଦି କାରଖାନା ଏଠାକୁ ବିକଳ୍ପ ରୋଜଗାର ମାଧ୍ୟମ ଯୋଗାଣ ନକରି ଜବରଦସ୍ତ ବେଘର କରିବା କାରଣ ଯୋଗୁଁ ଏ ଅଞ୍ଚଳରେ ୧୯୯୬ ମସିହାରୁ ଅସନ୍ତୋଷ ଲାଗିରହିଛି । ଆଗରୁ ଲୋକମାନେ ଭୂଷଣ ଇସ୍ପାତ ପ୍ରକଳ୍ପର ନିର୍ମାଣକୁ ବନ୍ଦ କରିଦେଇଥିଲେ । ୨୦୦୫ ମସିହାରେ ମଇ ମାସରେ ବଡଧରଣର ଆନ୍ଦୋଳନ ସଂଘଠିତ ହୋଇ ମହାରାଷ୍ଟ୍ରର ସିମ୍‌ଲେସ ଇସ୍ପାତ କାରଖାନାର ଭୂମି ପୂଜାକୁ ବନ୍ଦକରି ଦିଆଯାଇଥିଲା ମଧ୍ୟ ।

ଏଇ ଘଟଣାର ପୂରା ପ୍ରକରଣକୁ ଅଲଗା ଭାବରେ ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀ ରଙ୍ଗ ମାରି ଚାଲିଛନ୍ତି । ବିସ୍ଥାପନ ମଞ୍ଚ ଅଧିକ କ୍ଷତିପୂରଣ ରାଶି ଚାହୁଁଛନ୍ତି ବୋଲି କେହି କହୁଥିଲାବେଳେ ଆଉ କେହି ମାଓବାଦୀମାନେ- ଆନ୍ଦୋଳନକାରୀମାନଙ୍କୁ ଉସ୍‌କାଉଛନ୍ତି ବୋଲି ଖବର ବାହାରିଛି । ମହିଳାମାନଙ୍କୁ ବିକ୍ଷୋଭ ଆଗରେ ରଖାଯାଇ ସେମାନଙ୍କୁ ହଣା ମୁହଁକୁ ଠେଲି ଦିଆଯାଇଛି ଓ ଆଉକିଏ ନବୀନ ଦରଦୀ ମାନବିକ ସୁରକ୍ଷା କର୍ମୀ OTV ଆଗରେ ନବୀନ ପଟ୍ଟାୟକଙ୍କୁ ବଦ୍‌ନାମ କରିବା ପାଇଁ ଘଟଣାକୁ ସଂଘଠିତ କରାଯାଇଛି ବୋଲି ମଧ୍ୟ କହିଛନ୍ତି ।

ଇଣ୍ଡିଆନ ଏକ୍ସପ୍ରେସ୍ ୪ ଜାନୁଆରୀରେ ସଂପାଦକୀୟ ମନ୍ତବ୍ୟ ପ୍ରକାଶ କରି ଉଲ୍ଲେଖ କରିଛନ୍ତିଯେ- 'ଘଟଣା ନିଶ୍ଚିତ ଭାବରେ ଦୁଃଖଦ, କିନ୍ତୁ ଏହା ରାଜ୍ୟର ଦ୍ରୁତ ଶିଳ୍ପାୟନରେ ବାଧକ ନ ହେଉ ।' ନବୀନ ପଟ୍ଟନାୟକ ବନ୍ଧୁକ ପ୍ରିୟ ବୋଲି କୁହାଯାଇପାରେ- ଏସବୁ ସତ୍ତ୍ୱେ ସର୍ବଦଳ ବୈଠକରେ ସମସ୍ୟାକୁ ଆଲୋଚନା କରାଯାଉ- ଏଥିପାଇଁ ନବୀନ ପଟ୍ଟନାୟକ ନିଜେ ଆଗେଇ ଆସନ୍ତୁ । ଆନ୍ଦୋଳନକାରୀମାନେ କହୁଥିଲେ ଆମେ ଭାଜପାକୁ ଭୋଟ ଦେଇଛୁ । କିନ୍ତୁ ବର୍ଷେ ହେଲା ଆମେ ରାଜନୈତିକ ଦଳମାନଙ୍କଠାରୁ ସମ୍ପର୍କ ତୁଟାଇ ଦେଲୁଣି- ଆମେ ଏବେ ବିସ୍ଥାପନ ବିରୋଧୀ ମଞ୍ଚ ସହିତ ଯୋଡିହୋଇଛୁ ।

ଏହି ଅଭାବନୀୟ ଘଟଣା ଘଟିଥିବା ଜାଗାରେ- ବାହାର ଲୋକମାନଙ୍କର ଉସୁକାଣର ଚିହ୍ନବର୍ଣ୍ଣ ନଥିଲା କିମ୍ବା ଲୋକମାନଙ୍କ ଲକ୍ଷ୍ୟ ଓ ଉଦ୍ଦେଶ୍ୟର ସ୍ୱରରେ ଚଞ୍ଚକତା ନଥିଲା । ପ୍ରତ୍ୟେକ ଲୋକ ବିଶେଷଭାବରେ ମହିଳାମାନେ ସେମାନଙ୍କର ଜାଗା, ଜମିଜମାରୁ ବେଦଖଲ ଚାହୁଁ ନଥିଲେ । ସେମାନଙ୍କୁ ନେତୃତ୍ୱ ଦେଉଥିବା ଲୋକ, ସେଇ ଅଞ୍ଚଳର ବୋଲି ସେମାନେ କହୁଥିଲେ । ସେମାନଙ୍କ ମୁହଁରେ ସେମାନଙ୍କ କଥାବର୍ତ୍ତାରେ ଗୋଟିଏ କଥା ପ୍ରତିଫଳିତ ହେଉଥିଲା ଯେ ସେମାନେ ଲୋକମାନଙ୍କ ସାଥିରେ ଅଛନ୍ତି । ସେମାନେ ମାତ୍ର ବଞ୍ଚିବା ପାଇଁ ଆନ୍ଦୋଳନ ଜାରି ରଖିଛନ୍ତି । ଏହା ଅବଶ୍ୟମ୍ଭାବୀ ଯେ, ସରକାର ଏଣିକି ପ୍ରତିରକ୍ଷାମୂଳକ ପଦକ୍ଷେପ ନେବେ । ମୁଁ ମଧ୍ୟ ଆଉଏକ କଥା ଏଇ ପରିପ୍ରେକ୍ଷୀରେ ଅନୁଭବ

କରୁଛି ଯେ- ସବୁ ଭୁକ୍ତଭୋଗୀ- ସେମାନେ ଆଦିବାସୀ ହୁଅନ୍ତୁ ଅବା ଦଳିତ ବା ସଂଖ୍ୟାଲଘୁ ଗୋଷ୍ଠୀ, ସମସ୍ତେ ଏକାଠି ହୋଇ ସେମାନଙ୍କର ଜମିଜମା, ପ୍ରାକୃତିକ ସମ୍ପଦଗୁଡିକ କିପରି ବିନିଯୋଗ ହେବ ସେମାନେ ସ୍ଥିର କରନ୍ତୁ । ସରକାର ଲୋକମାନଙ୍କ ସହିତ ଆଲୋଚନା ନକରି ଏହାକୁ ଅନ୍ଧାଧୁନିଆ ଭାବରେ ଶିଳ୍ପପତିମାନଙ୍କୁ ଟେକିଦେଇ ପାରିବେନାହିଁ । ଯଦି ଆଲୋଚନାରେ ସେମାନେ ମନା କରନ୍ତି- ସରକାର ସେମାନଙ୍କର କଥାକୁ ସାମ୍ମାନ ଜଣାଇବା ଦରକାର । **'କିନ୍ତୁ ଆଲୋଚନା ଓ ଆଲୋଚନାରୁ ଉଦ୍ଭବ ସହମତି ପୋଲିସ ଫଉଜ ରଖି ତିଆରି କରାନଯାଉ ।'** ଘରୋଇ ଉଦ୍ୟୋଗ ଓ ଶିଳ୍ପପ୍ରତିଷ୍ଠାନ ସୁରକ୍ଷା ଯୋଗାଇ ଦେବାପାଇଁ ପୋଲିସକୁ ବ୍ୟବହାର କରାନଯାଉ ।

ଏସବୁ ଗଭୀର କଥାକୁ ଯତ୍‌କିଞ୍ଚିତ୍ ଲୋକଙ୍କ ସ୍ୱରରେ ପ୍ରତିଫଳିତ ହେବାର ସେମିତି କିଛି ଠୋସ୍ ଲାଭ ନାହିଁ- ହୁଏତ ଏଗୁଡିକ ପୋଥିଲେଖା ସ୍ଲୋଗାନ ବନିଯିବାର ଅବକାଶ ଅଛି । ବ୍ୟକ୍ତି ଭାବରେ ମୁଁ ଖୁସି ହେଉଛି ଯେ- କଳିଙ୍ଗ ନଗର ଘଟଣା ସମ୍ପର୍କରେ ଏକାଧିକ ପରାମର୍ଶମାନ ଆସୁଛି- ଏଇ ଘଟଣା- ଅତୀତରେ ଘଟି ଯାଇଥିବା ମାଇକଞ୍ଚ, ମାଦ୍ରାବାଜୁ ଗଜପତି ଓ ନବରଙ୍ଗପୁର ରାଇଘର ଘଟଣାର, ଏକଧର୍ମୀ କାରଣରୁ ଉଦ୍‌ଭବ ଘଟଣା । ନାଗରିକ ସମାଜ (ସିଭିଲ ସୋସାଇଟି) ତରଫରୁ ପଥଭ୍ରଷ୍ଟ ସରକାରଙ୍କୁ କାଠଗଡାକୁ ଆଣିବା ପାଇଁ ଉଦ୍ୟମ ହେବା ଦରକାର । ସରକାରଙ୍କ ଉଦ୍ୟମର ପ୍ରତି ଉଦ୍ୟମ ଚଳଚଞ୍ଚଳ କରାଯାଇ ଲୋକମାନଙ୍କୁ ବିକଳ୍ପ ରୋଜିରୋଟିର ମାଧ୍ୟମ ସମ୍ପର୍କରେ ଆଲୋଚନା ହେବା ଦରକାର ।

ଆମେ ଚାହୁଁ ଅଧିକରୁ ଅଧିକ ଲୋକେ କଳିଙ୍ଗ ନଗରକୁ ଯାଇ କେବଳ ମୃତାହତମାନଙ୍କ ସମ୍ପର୍କରେ ଖବର ଯୋଗାଡ ନକରି ଘଟଣାର ସାମଗ୍ରୀକ କାରଣ ସବୁକୁ ଖୋଲତାଡ କରନ୍ତୁ, ଏହାର ଆବଶ୍ୟକତା ଅଛି ।

ଏହା କରାଗଲେ- ଅନ୍ଧାଧୁନିଆ ଶିଳ୍ପାୟନ ସମ୍ପର୍କରେ ସଠିକ୍ ଚିତ୍ରଟିଏ ଦେଖାଯାଇପାରିବ ।

ଲୋକମାନଙ୍କୁ ଆଇନଗତ ସାହାଯ୍ୟ ଯୋଗାଇ ଦେବାର ଆବଶ୍ୟକ ଅଛି । କିନ୍ତୁ ଏ ସମ୍ପର୍କରେ ସ୍ୱେଚ୍ଛାକୃତ ଭାବେ ବିନା ପାରିଶ୍ରମିକରେ ସଚ୍ଚୋଟ ଓକିଲ ପାଇବା କଷ୍ଟକର ହୋଇପଡିଛି ।

---

# ଆଦିବାସୀଙ୍କୁ ଆଶ୍ୱାସନା !

ଜନରାଜ୍ୟ ଦିବସ, ୨୦୦୬ ମୁଖ୍ୟମନ୍ତ୍ରୀ ରାଜଧାନୀରେ ଆଦିବାସୀ ମେଳା ଉଦ୍‌ଘାଟନ ପୂର୍ବକ ଘୋଷଣା କଲେ ଯେ ରାଜ୍ୟସରକାର ଆଦିବାସୀମାନଙ୍କ ବିରୁଦ୍ଧରେ ଛୋଟମୋଟ ଦରଜ ହୋଇଥିବା ମୋକଦ୍ଦମା ସବୁ ପ୍ରତ୍ୟାହାର କରିନେବେ । ଯେଉଁ ମୁଖ୍ୟମନ୍ତ୍ରୀଙ୍କର ପ୍ରଶାସନିକ କଳ, ସାମାନ୍ୟତମ କାରଣରେ ଉତ୍ତେଜିତ ହୋଇ ଆଦିବାସୀମାନଙ୍କୁ ଗୁଳିଦ୍ୱାରା ମାରିପକାଏ- ପୁଣି କଳିଙ୍ଗନଗର ଘଟଣାର ୨୪ଦିନ ପରେ ଆଦିବାସୀ ମେଳା ଉଦ୍‌ଘାଟନ ପ୍ରସଙ୍ଗ ଗୋଟିଏ ପ୍ରକାର ସ୍ୱବିରୋଧ ସ୍ୱର ପ୍ରତିଫଳନ କରୁଛି । କିନ୍ତୁ ମୋତେ ଯେଉଁ କଥା ଆନ୍ଦୋଳିତ କରୁଛି ତାହା ହେଉଛି ଯେ- ଏଇ ଯେଉଁ ମୋକଦ୍ଦମା ପ୍ରତ୍ୟାହାର କଥା କୁହାଯାଉଛି- ତାହ କ'ଣ ମୁଖ୍ୟମନ୍ତ୍ରୀଙ୍କର ସ୍ୱୀକାରୋକ୍ତି ନୁହେଁ ଯେ ଗରିବ ଆଦିବାସୀମାନଙ୍କ ଉପରେ ମିଥ୍ୟା ମୋକଦ୍ଦମା ଲଦି ଦିଆଯାଇଛି । ପୁନଶ୍ଚ ମୁଖ୍ୟମନ୍ତ୍ରୀଙ୍କ କର୍ତ୍ତୃତ୍ୱ ଏ ଯେଉଁ ଅଯାଚିତ ସାହାଯ୍ୟ ମୁକ୍ତ ମଞ୍ଚରେ ଘୋଷଣା କରାଯାଇଛି- ତାହା

କ'ଣ କଳିଙ୍ଗନଗର ଘଟଣା ପରେ ଆନ୍ଦୋଳିତ ଜନତାଙ୍କୁ ମୁଖ୍ୟମନ୍ତ୍ରୀଙ୍କର କୁମ୍ଭୀର କାନ୍ଦଣାକୁ ପ୍ରଘଟ କରିବା ପାଇଁ ଅଭିପ୍ରେତ ନୁହେଁ କି !

ଏ ଯେଉଁ ସାହାଯ୍ୟ ଘୋଷଣା କରାଗଲା- ତାହା କଦାଚିତ ଆଦିବାସୀମାନଙ୍କୁ ତାଙ୍କର ମୂଳଦାବିରୁ ହଟାଇ ଦେଇ ପାରିବ ନାହିଁ । ସେମାନେ ଏବକାର ସରକାରଙ୍କଠାରୁ ଆରମ୍ଭକରି ପୂର୍ବତନ ସରକାରଙ୍କ ଦ୍ୱାରା ନାନାଭାବରେ ପ୍ରତାରିତ ହୋଇ ଆସିଛନ୍ତି । କଳିଙ୍ଗନଗର ଘଟଣା ରୋଗର ଲକ୍ଷଣ ମାତ୍ର- ରୋଗଟି ହେଉଛି ସେମାନଙ୍କୁ ନିରବଚ୍ଛିନ୍ନ ଭାବରେ ଦବାଇ ରଖିବାର ନିଆଁ ଝୁଲ ଛଡା ଆଉକିଛି ନୁହେଁ । କାଶୀପୁରରେ ଯେତେବେଳେ ଏଲ.ଆଣ୍ଡ.ଟି. ଦ୍ୱାରା ସିଜିମାଳି, କୁଟ୍ରୁମାଳି ପାହାଡରେ ଖଣିଖାଦାନ କାମ ଆରମ୍ଭ ପାଇଁ ଆଦିବାସୀମାନଙ୍କ ଦ୍ୱାରା ପ୍ରଶ୍ନ କରାଗଲା- ୪୭ ଜଣଲୋକଙ୍କୁ ବିଭିନ୍ନ ଦଫାରେ ବାନ୍ଧି ନିଆଯାଇ ରାୟଗଡା ଜେଲ୍‌ରେ ତିନିସପ୍ତାହ ରଖାଗଲା- ଯେତେବେଳେ ସେମାନେ ଖଲାସ ହେଲେ ସେମାନଙ୍କୁ ଆଉ ଗୋଟେ କେଶରେ ୭ଦିନ କାଳ ଅଟକ ରଖାଗଲା । କାରଣ ଭାବରେ କଳାହାଣ୍ଡି କଥା କୁହାଗଲା, ତା'ପରେ ସେମାନଙ୍କୁ ଶେଷରେ ସର୍ତ୍ତମୂଳକ ଜାମିନ୍‌ରେ ଛାଡି ଦିଆଗଲା । ମୋକଦ୍ଦମା ସେମତି ଗଡିଚାଲିଲା- ଯେତେବେଳେ ମୋକଦ୍ଦମାରେ ଭୁଲଭଟକା ଗୁଡା ପଦାକୁ ଆସିଲା, ସେମାନଙ୍କୁ ଜାମିନ୍ ବିହୀନ ପରୱାନା ଦ୍ୱାରା ପୁଣି ବାନ୍ଧି ନିଆଗଲା । ସେମାନଙ୍କୁ ଯିବା ଆସିବା, ଓକିଲ ଖର୍ଚ୍ଚ ବାବଦକୁ ୧୦ହଜାର ଟଙ୍କା ଖର୍ଚ୍ଚ କରାଯାଇ ଜାମିନରେ ମୁକ୍ତ କରାଗଲା । ପ୍ରାୟ ୧ ହଜାର ଆଦିବାସୀମାନଙ୍କୁ

ଏହିପରି ବାରମ୍ବାର ଗ୍ରେପ୍ତାର କରାଯାଇ ମାସାଧିକ କାଳ ଜେଲରେ ଅଟକଥିବା କାହାଣୀ ଅଛି- ଯେଉଁମାନଙ୍କ ନାମରେ ଜାମିନ ବିହୀନ ପରଓ୍ୱାନା ଝୁଲି ରହିଛି । ସେମାନେ ନିଜ ଜାଗାରେ ମୁକ୍ତଭାବରେ ବୁଲାଚଲା କରିବି ପାରୁନାହାଁନ୍ତି ଏବେ ସୁଦ୍ଧା । ସେଇ ଅଞ୍ଚଳର ଦୁଇଜଣ ଆଦିବାସୀ ଜେଲରେ ସଢ଼ୁଛନ୍ତି ।

ଯେତେବେଳେ ଆଦିବାସୀମାନଙ୍କ ଉପରେ ଅବିଚାରିତ ଭାବରେ କେଶ୍ ପରେ କେଶ୍ ଲଦି ଦିଆଯାଉଛି- ଏ ସମ୍ପର୍କରେ ସାଧରଣ ଲୋକ ଏହାକୁ ଅନ୍ୟାୟ ଘଟଣା ବୋଲି ମଧ୍ୟ କହି ପାରୁନାହାଁନ୍ତି । କାରଣ ମୋକଦ୍ଦମା କୋର୍ଟରେ ଅଛି ।

ସମ୍ଭବତଃ ଏ ସମ୍ପର୍କରେ ଶିବରାମର କାହାଣୀ କଞ୍ଚା ଉଦାହରଣଟିଏ ଭାବରେ ବିଚାର କରାଯାଇ ପାରେ- ସେ ସେପ୍ଟେମ୍ବର ମାସଠାରୁ ଜେଲରେ ଅଛି- ଏଇ ଲେଖିକାଙ୍କୁ ପତ୍ରଟିଏ ଲେଖି ଜଣାଇଛି ଯେ- ଆଜିକୁ ସେ ୪ ମାସ ହେଲା ଜେଲରେ ଅଛି- ପୋଲିସଠାରୁ ଅନ୍ୟମାନଙ୍କ ପାଖରୁ ଖଣିଖାଦାନ ବିରୋଧୀ ଆନ୍ଦୋଳନରେ ସାମିଲି ନହେବା ପାଇଁ ସେମାନେ ସବୁ ତାଗିଦା କରିଛନ୍ତି- ଜେଲ ଆସିବା ଆଗରୁ ତାଗିଦ ସତ୍ତ୍ୱେ ମୁଁ ଆଖପାଖ ଗାଁ ଗଣ୍ଡା ବୁଲି ଖଣିଖାଦାନ ପାଇଁ ଲୋକଙ୍କୁ ସଚେତନ କରାଉଥିଲି । ମୋ ଗାଁ ମାଇକଞ୍ଚରୁ ଲୋକଙ୍କୁ ନେଇ ଟିକିରିକୁ ଯାଇଥିଲି । ଏସବୁ କଥା ବିସ୍ତାର ଭାବରେ ସମ୍ବାଦରେ ପ୍ରକାଶ ପାଇଛି ସେଇ ସମ୍ବାଦରେ ମୋ ନାମ ପ୍ରକାଶ ପାଇଥିଲା- ଏଥିପାଇଁ ପୋଲିସ୍ ମୋ ପଛରେ ଛାଇପରି ଲାଗି ରହିଛି-

ମୋତେ ଗିରଫ କରିବା ପାଇଁ ପୋଲିସ ରାତି ଅଧିଆ ମୋ ଘରକୁ ଆସିଥିଲେ- ମୁଁ ଗ୍ରେପ୍ତାର ଏଡାଇବାକୁ ଚାହିଁଥିଲି- କିଛିହେଲା ନାହିଁ, ସେମାନେ ମୋତେ ଘରୁ ନେଇଗଲେ ।

ମୋ ବାପା ଓ ମା'ଙ୍କର ବିରୁଦ୍ଧରେ ଗିରଫ ପରଓ୍ୱାନା ରହିଛି । ପୋଲିସ ଭୟରେ ସେମାନେ କାମଧନ୍ଦାକୁ ଯାଇ ପାରୁନାହାଁନ୍ତି କି ମୋତେ ଜେଲରେ ଦେଖିବା ପାଇଁ ପଇସା ଖର୍ଚ୍ଚ କରି ରାୟଗଡ଼ାକୁ ଆସି ପାରୁନାହାଁନ୍ତି ।

'ମୁଁ ଖୁସି ଯେ ମୁଁ ଜେଲରେ ଅଛି, ମୁଁ କୌଣସି ଭୁଲଭଟକା କରିନାହିଁ । ଆଜି ନହେଲେ କାଲି ହେଲେବି ମୁଁ ନ୍ୟାୟ ପାଇବି ବୋଲି ମୁଁ ଆଶାବାଦୀ ଅଛି । ତା'ପରେ ମୁକ୍ତି ହେବି, ଏତିକି ଦୁଃଖ ଯେ ମୁଁ ମୋ ବାପା ଓ ମାଆଙ୍କୁ ସାହାଯ୍ୟ କରିପାରୁନାହିଁ । ପତ୍ର ପ୍ରେରକ ଶିବରାମର ଜାମିନ୍ ଆବେଦନ ହାଇକୋର୍ଟରେ ଖାରଜ ହୋଇଛି ।

କଳିଙ୍ଗ ନଗରରେ ନେତୃତ୍ୱ ନେଉଥିବା ରବି ଜାରିକା ଗୋଟାଏ ବର୍ଷ ଜେଲରେ ଥିଲେ, ତାଙ୍କୁ କଳିଙ୍ଗନଗର ଘଟଣା ଓ ତହିଁରେ ୧୩ଜଣ ନିର୍ଦ୍ଦୋଷ ଆଦିବାସୀ ଲୋକ ମରିବା ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ପଡିଲା ତାଙ୍କୁ ଜେଲରୁ ଖଲାସ ହେବାପାଇଁ ।

ଶିବରାମ ଓ ରବିଙ୍କ ବିରୁଦ୍ଧରେ ଅଣାଯାଇଥିବା ଦଫା ସେମାନଙ୍କୁ ଆଜୀବନଠାରୁ ଆରମ୍ଭ କରି ୧୦ବର୍ଷ ଯାଏଁ ସଜା ହୋଇପାରେ କିନ୍ତୁ ଜେଲରେ ପୁରୁଷ ଓ ମହିଳା ମିଶାଇ ଅନେକ ଆଦିବାସୀଙ୍କୁ ଜେଲରେ ଘେରବନ୍ଦୀ କରାଯାଇଛି- ଯେଉଁମାନେବି ଏବେ ସୁଦ୍ଧା ଜାଣନ୍ତି ନାହିଁ

ସେମାନଙ୍କ ଅପରାଧ କ'ଣ ? କେଉଁ ଦଫା ସେମାନଙ୍କ ବିରୁଦ୍ଧରେ ଲଗାଯାଇଛି । କାଶୀପୁରରେ ଶିବରାମଙ୍କ ବାପା ଓ ମା ଭଳି ଅନେକ ଲୋକ ଅଛନ୍ତି- ଯାହା ବିରୁଦ୍ଧରେ ମୋକଦ୍ଦମା ରୁଜୁ କରାଯାଇଛି । କାହାକୁ କେତେବେଳେ ଗିରଫ କରାଯିବ ପୋଲିସ ମର୍ଜି ଉପରେ ନିର୍ଭର କରୁଛି । ଏଇ ଅଞ୍ଚଳର ମୁକ୍ତା ଜଣେ ଦୁର୍ବଳ ସ୍ୱାସ୍ଥ୍ୟଧାରୀ ଆଦିବାସୀ ମହିଳା । ମାଇକଞ୍ଚ ଘଟଣା ବିରୁଦ୍ଧରେ ଆଲୋଚନା ପାଇଁ, ତା ବିରୁଦ୍ଧରେ ପୋଲିସ କେଶ୍ ଦରଜ କରିଛି, ଜାମିନବିହୀନ ପରୱାନା ତା ନାମରେ ଅଛି । ନବୀନ ପଟ୍ଟନାୟକ ଜନରାଜ୍ୟ ଦିବସରେ ଯେଉଁ ମୁକ୍ତ ଘୋଷଣା କରିଥିଲେ- ଏଇ ଲୋକମାନେ ସମ୍ଭବତଃ ନାହାଁନ୍ତି । ତା'ହେଲେ ତାଙ୍କ ଘୋଷଣାର ଅର୍ଥ କଣ ?

କିନ୍ତୁ ବାସ୍ତବରେ ଆଦିବାସୀମାନଙ୍କ ପାଇଁ ଏହା କିଛି ନୂଆକଥା ନୁହେଁ । ଇଂରେଜମାନେ ଆଦିବାସୀମାନଙ୍କର ଜଙ୍ଗଲ ଜମି ସବୁ ହାତେଇବା ପାଇଁ ସେମାନଙ୍କୁ ଅପରାଧୀ (କ୍ରିମିନାଲ) ବୋଲି ଘୋଷଣା କରିଥିଲେ । ଏବକୁ ମଧ୍ୟ ସେଇ ଜମିଜଙ୍ଗଲ ପାଇଁ ଲୋକପ୍ରିୟ ଗଣତାନ୍ତ୍ରିକ ସରକାର ସେଇ କଥାକୁ ଆପଣେଇ ଚାଲିଛି । ଦୁଇଟି ଶାସନ ପ୍ରଣାଳୀର ତୁଳନା ଭୟ ସଞ୍ଚାର କରୁଛି । ଇଂରେଜ ଫଉଜମାନଙ୍କର ଅସ୍ତ୍ରଶସ୍ତ୍ର, ପୋଲିସ ଗାଡି, ସେନା ଛାଉଣୀ (ବାରାକ୍), ଜୋତା, କୋଟ୍‌ପେଣ୍ଟ ପରିହିତ ଶାସକ ଗୋଷ୍ଠୀ- ଆଦିବାସୀ ଅଞ୍ଚଳର ଆଭ୍ୟନ୍ତର ଜାଗାକୁ ଯାଇ ଆଇନ ଶୃଙ୍ଖଳାକୁ ବଜାୟ ରଖିବାର ଚିତ୍ରଟିମାନ ମନକୁ ଆବୋରି ନେଉଛି ।

ନବୀନ ପଟ୍ଟନାୟକ ହୁଏତ ଫମ୍ପା ପ୍ରତିଶ୍ରୁତି ବର୍ଷା କରି ନିରୀହ ଆଦିବାସୀମାନଙ୍କୁ ଅପରାଧୀ ଭାବରେ ଦେଖିବାକୁ ଚାହାଁନ୍ତି- ସେମାନେ ମୌଳିକ ଦାବି ଜାହିର କରିବାକୁ ଚାହୁଁଛନ୍ତି- ସେମାନେ ଦାବିକୁ ଦୋହରାଉ ଥିଲାବେଳେ- ପୋଲିସ ପଠାଯାଇ ସେମାନଙ୍କୁ ହତ୍ୟା କରାଯାଉଛି- ଏଠି ଅପରାଧୀ କିଏ ? ବର୍ତ୍ତମାନ ସମୟରେ ଅପରାଧୀ ହିଁ ଉତ୍ତରକୁ ନିୟନ୍ତ୍ରଣ କରୁଛି । ସେଥିପାଇଁ ବୋଧ ହୁଏ ଆମ ମୁଖ୍ୟମନ୍ତ୍ରୀ ଯାହାତାହା କହି ଖସିଯିବାକୁ ମସୁଧା କରିଛନ୍ତି ।

ସେ ଚିନ୍ତା କରିବା ଦରକାର ଯେ ସେ ଏକଛତ୍ରବାଦୀ ଶାସନର ଶାସକଭାବରେ ହାବଭାବ ଦେଖାଉଛନ୍ତି । ଗଣତନ୍ତ୍ରରେ ଏପରି ମନୋଭାବ କେବଳ ବେଖାପ ସ୍ୱରଳୟ ତିଆରି କରିବାକୁ ଯାଉଛି । ରାଜ୍ୟରେ ଶିଳ୍ପାୟନ ଲକ୍ଷ୍ୟରେ ନବୀନ ପଟ୍ଟନାୟକ ପୁଞ୍ଜି ଲଗାଣ ପାଇଁ ଆଦିବାସୀ ସଂହାର ଅଭିଯାନ ଆରମ୍ଭ କରିଛନ୍ତି । ବେତନଭୋଗୀ କର୍ମଚାରୀମାନେ ଏଇ ଦ୍ରୁତ ଉନ୍ନୟନ ପାଇଁ କତିପୟ ଆଦିବାସୀଙ୍କୁ ଜୀବନରୁ ହଟେଇ ଦେବାରେ ଯାଏଆସେ କିଛି ନାହିଁ ବୋଲି ମନେକରୁଛନ୍ତି । ଉନ୍ନୟନର ଅର୍ଥ କଣ ? ଏଇ 'କତିପୟ' ଶବ୍ଦର ଅର୍ଥ ବା କଣ ? ଅତୀତରେ ୫ବର୍ଷ ଆଗରୁ ମାଇକଞ୍ଚ ଏହାର ପୁଣି ୩ ବର୍ଷ ପରେ ୧୩ ଜଣ ଆଦିବାସୀମାନଙ୍କୁ ହଟାଇ ଦିଆଯାଇଛି । କେତେଜଣ ନିରୀହ ଆଦିବାସୀମାନଙ୍କୁ ହଟାଇ ଦିଆଯାଇ ନବୀନ ପଟ୍ଟନାୟକ ମୋଟା ଅଙ୍କର ବ୍ୟବସ୍ଥାକରି ନିଜ ଶାସନର ଦୁର୍ଗକୁ ଧରି ରଖିବାକୁ ସମ୍ଭବତଃ ଚେଷ୍ଟାକରିଛନ୍ତି । ଏବକାର ପଇସା

ସର୍ବସ୍ୱ ଅର୍ଥନୀତିରେ ଏହା ଆଦୌ ବଡକଥା ନୁହେଁ । ଗୁଳିକାଣ୍ଡ ଘଟଣାର ଏକମାସ ପରେ ଯେଉଁଠି ୧୩ ଜଣ ଆଦିବାସୀ ମରିଯାଇଥିଲେ- ନବୀନ ବାବୁ ମୋକଦ୍ଦମା ପ୍ରତ୍ୟାହାର କରି ନେବା ପାଇଁ ଘୋଷଣା କରିଛନ୍ତି । ଏଇଥିପାଇଁ ସେ ଲୋକମାନଙ୍କୁ ଶାନ୍ତି ବଜାୟ ରଖିବା ପାଇଁ ନିବେଦନ କରିଛନ୍ତି । ଘଟଣା ସମ୍ପର୍କରେ ନ୍ୟାୟିକ ଯାଞ୍ଚ ପାଇଁ ଆଦେଶ ଦିଆଯାଇଛି । ଯଦିଓ ଘଟଣାର ମୋଡକୁ ବଦଳାଇ ଦେବାକୁ ଅନବରତ ଉଦ୍ୟମ ହେଉଛି ।

ଯଦି ମୁଖ୍ୟମନ୍ତ୍ରୀ ଆଦିବାସୀମାନଙ୍କୁ ନ୍ୟାୟ ଦେବା ପାଇଁ ସତରେ ଅନ୍ତରାତ୍ମାରେ ଚାହୁଁଛନ୍ତି- ତେବେ ଘଟଣା ପାଇଁ ଦାୟୀ ଜିଲ୍ଲାପାଳ ଓ ଆରକ୍ଷୀ ଅଧୀକ୍ଷକ ବିରୁଦ୍ଧରେ ଫୌଜଦାରୀ ଦଫା ଲଗାଯାଉ । ଏହା କରାଗଲେ ତାଙ୍କର ନିଜ ଦୋଷ ଦୁର୍ବଳତା ମଧ୍ୟ ପଦାକୁ ଆସିଯିବ ।

---

# ଏକ ଅସମାପ୍ତ ଗୀତ

ବଡ଼ ସହରର ଏଇ ଛୋଟ ଏକେଣା ଜାଗାଟିରେ
ଆମେ ଅଛୁ ପାଞ୍ଚ ସହସ୍ର ମଣିଷ ।
ଆଉ ଅନ୍ୟମାନେ, ଚାରିଆଡ଼େ ବିଛାଡି ହୋଇ ରହିଛନ୍ତି
ଏ ବିଶାଳ ନଗ୍ରରେ ?
ସାରା ଦେଶଯାକ କେତେଯେ କେଜାଣି ଥିବେ !
ଏଇଠି କେବଳ,
ଦଶ ସହସ୍ର ମେହନତୀ ହାତ ବିହନ ଫିଙ୍ଗନ୍ତି,
ଆଉ କାରଖାନା ଚଳାଇ ରଖନ୍ତି
କେତେ କେଜାଣି ଲୋକମାନେ ଭୟ, ଆତଙ୍କ, ଯନ୍ତ୍ରଣା
ଆଉଟୁପାଉଟୁ କ୍ଷୁଧା,
ଏବଂ ଉତ୍‌ପୀଡକ ନୀତିଶାସ୍ତ୍ରର ଚାପ,
ସନ୍ତ୍ରାସ ଓ ପାଗଳାମୀ ଆତଙ୍କୁ

ଠେଲିହୋଇ ଧସି ପଶୁଛନ୍ତି ?
ଆମେ ଛଅ ଜଣ ଏଠି ନିରୁଦ୍ଦିଷ୍ଟ
ଯେମିତିକି ତାରକା ପୁଞ୍ଜିର ଅନ୍ଦିକନ୍ଦି ଜାଗା ।
ଜଣେ ମୃତ, ଆଉ ଜଣକୁ ଏପରି ପାଶବିକ ମାଡ ମାରିଯାଇଛିଯେ
ପରତେ ଆସୁନି, ଆଉ ଚାରିଜଣ ଆତଙ୍କରୁ ବର୍ତ୍ତି ଯିବାପାଇଁ ଚାହିଁଲେ
ଜଣେ ଖାଁ ଖାଁ ଶୁନ୍ୟତାର ଗର୍ତ୍ତକୁ ଲମ୍ଫ ମାରିଦେଲା,
ଅନ୍ୟଜଣେ କାନ୍ଥରେ ମୁଣ୍ଡପିଟି କୋଡି ହେଉଥିଲା
ଅନ୍ୟ ଦୁଇଜଣଙ୍କ ମୁହଁକୁ ମୃତ୍ୟୁ ସ୍ଥିର
ଅପଲକ ଆଖିରେ ଚାକି ବସିଥିଲା ।
ଫାଶୀବାଦର ବିବର୍ଣ୍ଣ ମୁହଁ ଆତଙ୍କକୁ ଚହଟାଇ ଦେଇଛି ଏଠି ।
କାଟୁଥିବା ଛୁରିଧାର ପରି ସଜୋର ଏବଂ
ସ୍ପଷ୍ଟଭାବରେ ଆଉ କେଉଁ କଥା ସେମାନେ ଜାଣନ୍ତି ନାହିଁ
ରକ୍ତପାତ ତାଙ୍କ ପାଇଁ ଗୌରବର ମେଡ଼ାଲ
ହତ୍ୟା ହେଉଛି ବୀରତ୍ୱର ଗାଥା
ହେ ଭଗବାନ, ଯେଉଁ ପୃଥିବୀ ତମେ ତିଆରି କରିଛ,
ସପ୍ତାହର ସାତ ଦିନ, କ'ଣ ଏଥିପାଇଁ ?

ଏଇ ଚାରିକାନ୍ଥ ଭିତରେ କେବଳ ଖାଲି ନିର୍ଜନତା

ଗଣତି ପାଇଁ ସଂଖ୍ୟାସବୁ ଅଛି, କିନ୍ତୁ କମ୍ ଓ ବେଶୀ ହୁଏ ନାହିଁ
ମୃତ୍ୟୁ ଆଉ ମୃତ୍ୟୁ ଚିନ୍ତା ଆବୋରି ନେଇଛି ।
ମୋ ବିବେକ ହଠାତ୍ ଜାଗରିତ ହେଲା,
ମୁଁ ଦେଖିଲି ଏ ଜୁଆରରେ ହୃଦ୍ ସ୍ପନ୍ଦନ ନାହିଁ,
ଅଥଚ ମେସିନ୍‌ରେ କମ୍ପନ ଅଛି,
ଆଉ ସାମରିକ ବାହିନୀ ଧାଇଁ 'ମା'ର ମୁହଁ ନେଇଛି
ସଦା ତୃପ୍ତିକର ।
ମେକ୍‌ସିକୋ, କ୍ୟୁବା ଆଉ ଏ ପୃଥିବୀ
ଦମନ ବିରୁଦ୍ଧରେ ଚିତ୍କାର କରିଚାଲିଛନ୍ତି ।
ଏଇ ଆମ ଦଶ ସହସ୍ର ହାତ,
କିଛି ମୋଟେ ତିଆରି କରିପାରୁନାହିଁ ।
ଏଇମିତି କେତେ ହାତ ସାରାଦେଶରେ ରହୁଛନ୍ତି କେଜାଣି ?
ମେସିନଗନ, ବୋମାଠାରୁ ଅଧିକ ସଜୋର,
ରାଷ୍ଟ୍ରପତିଙ୍କ ରକ୍ତ ଏଠି ବଳୀୟାନ
ପୁନଶ୍ଚ ଆମ ମୁଷ୍ଟିବଦ୍ଧ ହାତ
ଚଳଚଞ୍ଚଳ ହୋଇ ଆଘାତ କରିବ !
ସନ୍ତ୍ରାସ ଗୀତ ଗାଇବା ଖୁବ୍ କଷ୍ଟକର
ବାଧହୋଇ ଗାଇବାକୁଥିବ ଯେତେବେଳେ,

ଆତଙ୍କରେ ସେତେବେଳେ ମୁଁ ବଞ୍ଚୁଛି ଆଉ ମରୁଛି ।
ଏହା ଭିତରେ ଏବଂ ଏଇ ଅସରନ୍ତି ଶୂନ୍ୟତାରେ
ନୀରବତା ଖାଲି ଗର୍ଜିଉଠେ,
ଏହାତ ମୋ କବିତାର ଉପସଂହାର,
ମୁଁ ଯାହା ଦେଖିନାହିଁ,
ମୁଁ ଯାହା ଅନୁଭବ କରି ନାହିଁ,
ସେଇ ମୁହୂର୍ତ୍ତ ସବୁ ଜନ୍ମ ନେବ....

*୧୯୭୩ ମସିହା ଚିଲିର ବଳପୂର୍ବକ ଶାସନ ପରିବର୍ତ୍ତନ ସମୟରେ ଗାୟକ କବି ଭିକ୍ଟର ଜାରାଙ୍କୁ ଅତି ନିର୍ମମଭାବେ ହତ୍ୟାକରାଯିବା ପୂର୍ବରୁ ଏଇ ଶେଷ ସଂଗୀତ ରଚନା କରିଥିଲେ ।*

---

# ଭଗବାନ ଯାହା ଚାହାଁନ୍ତି

ଭଗବାନ ଚାହାଁନ୍ତି ଯାହା ପାଆନ୍ତି ତାହା
ସେ ତ ଆମ ଟିକି ଛୁଆଟା, ପୁରୋହିତଙ୍କ ଆଡ଼େ ଚାହିଁଦେଇ
ତାର ନିସ୍ତେଜ ଆଙ୍ଗୁଠିକୁ ଜାପାନୀ ଗୀଟାରରେ ଟିପେଇ ଲାଗିଲା
ପୁରୋହିତ କହିଲେ-
ଭଗବାନ ସଦ୍‌ଗୁଣ ଚାହାଁନ୍ତି, ଭଗବାନ ଆଲୋକ ଚାହାଁନ୍ତି
ସେ ବି ଚାହାଁନ୍ତି ବିଶୃଙ୍ଖଳା, ଅରାଜକତା ଆଉ ସିଧା ସିଧା ଯୁଦ୍ଧ
ଭଗବାନ ଚାହାଁନ୍ତି ଯାହା ପାଆନ୍ତି ତାହା
ଏଥିରେ ଆଶ୍ଚର୍ଯ୍ୟ ହେବାରେ ନାହିଁ, ଏହାତ କେବଳ ମତ ସିଦ୍ଧାନ୍ତ
କହିଲେ ଅନ୍ୟ ଜାଗାର ମହାମାନବ
ଭଅଁର ଏବଂ କୃଷ୍ଣସାର ମୃଗ
ବାଇବେଲକୁ ଲଟକାଯାଗାରୁ ଉଠାଇ ନେଲେ

ମାଙ୍କଡଟି କୋଣରେ ବସି ତାର ବହିରେ ପଢ଼ା ବିଷୟ ଲେଖିଚାଲିଲା

ଭଗବାନ ଚାହାଁନ୍ତି ଯାହା ସେ ପାଆନ୍ତି ତାହା

ଆଉ ଆମକୁ ସହାୟ ହୁଅନ୍ତି

ଭଗବାନ ଶାନ୍ତି ଚାହାଁନ୍ତି ଭଗବାନ ଯୁଦ୍ଧ ଚାହାଁନ୍ତି

ଭଗବାନ ମରୁଡି ଚାହାଁନ୍ତି ଭଗବାନ ଶସ୍ୟ ମହଜୁଦ ଘର ଚାହାଁନ୍ତି

ସେ ଯାହା ଚାହାଁନ୍ତି ତାହା ପାଆନ୍ତି

ଭଗବାନ ରାଜଦ୍ରୋହ ଚାହାଁନ୍ତି ଭଗବାନ ମୈଥୁନ ଚାହାଁନ୍ତି

ଭଗବାନ ସ୍ୱାଧୀନତା ଚାହାଁନ୍ତି ଭଗବାନ ପ୍ଲାଷ୍ଟିକ ବିସ୍ଫୋରଣ ଚାହାଁନ୍ତି

ଭଗବାନ ଯାହା ଚାହାଁନ୍ତି ତାହା ପାଆନ୍ତି

ଏତେ ଆଶ୍ଚର୍ଯ୍ୟ ହୁଅ ନାହିଁ

ମୁଁ କେବଳ ଥଟ୍ଟା କରୁଛି

ବିଦେଶ ଆମଦାନୀ କୌତୁକ କହିଲା

ଅଣ୍ଡିରାଗଧ ଆଉ ହେଟାବାଘ

ସେମାନଙ୍କ ପୃଷ୍ଠା ସବୁକୁ ଉଡ଼ାଇ ନେଲେଣି

କୋଣରେ ବସିଥିବା ମାଙ୍କଡ଼, ତା'ର ବହିରେ କୌତୁକିଆ କଥା ଲେଖିଲାଣି

ଭଗବାନ ଚାହାଁନ୍ତି ଯାହା ପାଆନ୍ତି ତାହା

ଭଗବାନ ଆଦିବାସୀ ହେବାକୁ ଚାହାଁନ୍ତି

ଭଗବାନ ଛିଦ୍ର ଚାହାଁନ୍ତି ଭଗବାନ ବର୍ଷାପାତ ଚାହାଁନ୍ତି

ଭଗବାନ ଅନଧିକାର ପ୍ରବେଶ ଚାହାଁନ୍ତି
ଭଗବାନ ଚାହାଁନ୍ତି ଗୁଣିଗାରେଡି ଭଗବାନ ଚାହାଁନ୍ତି ସମାଧି
ଭଗବାନ ଆଇନ ଚାହାଁନ୍ତି ଭଗବାନ ଚାହାଁନ୍ତି ସଂଗଠିତ ଅପରାଧ
ଭଗବାନ ବୀରଯୋଦ୍ଧା ହେବାକୁ ଚାହାଁନ୍ତି ଭଗବାନ ଜେହାଦ୍ ଚାହାଁନ୍ତି
ଭଗବାନ ଭଲ ଚାହାଁନ୍ତି ଭଗବାନ ମନ୍ଦ ଚାହାଁନ୍ତି
ଭଗବାନ ଚାହାଁନ୍ତି ଯାହା ସେ ପାଆନ୍ତି ତାହା

*ରୋଜର ଓ୍ୱାଟରସ୍‌ଙ୍କ ଦ୍ୱାରା ଲିଖିତ 'ଭଗବାନ ଯାହା ଚାହାଁନ୍ତି'ର ପ୍ରଥମ ଭାଗ 'ଅପରେସନ ଡ଼େଜର୍ଟ ଷ୍ଟର୍ମ' ଦ୍ୱାରା ବିକ୍ଷୁରିତ ଆଦର୍ଶ ସ୍ଫୁଲିଙ୍ଗର ଏକ ପ୍ରତିଫଳନ ।*

---

ଅଚ୍ୟୁତ ଦାସ, ବିଦ୍ୟା ଦାସ ରାୟଗଡ଼ା ଜିଲ୍ଲାର କାଶୀପୁର ସ୍ଥିତ 'ଅଗ୍ରଗାମୀ' ସ୍ୱେଚ୍ଛାସେବୀ ସଂଗଠନ ସହିତ ସାମିଲ ରହି ଦୀର୍ଘ ୨୫ବର୍ଷ ହେଲା ଆଦିବାସୀମାନଙ୍କ ଗହଣରେ କର୍ମତତ୍ପର। ଆଦିବାସୀମାନଙ୍କର ଶୋଷଣ ସମସ୍ୟା ଓ ସାମାଜିକ, ଅର୍ଥନୈତିକ ଓ ପାରିବେଶକ ପ୍ରସଙ୍ଗକୁ ନେଇ ସେମାନେ ଅନେକ ଲେଖା ଖବରକାଗଜ, ପତ୍ରପତ୍ରିକାରେ ପ୍ରକାଶ କରିଆସୁଛନ୍ତି। ଆଦିବାସୀମାନଙ୍କର ମାନବିକ ଅଧିକାର ସମ୍ପର୍କରେ ମଧ୍ୟ ସ୍ୱର ଉତ୍ତୋଳନ କରିଛନ୍ତି। କାଶୀପୁର ଭଳି ଦୁର୍ଗମ ଆଦିବାସୀ ଅଧ୍ୟୁଷିତ ଅଞ୍ଚଳରେ ସାମାଜିକ ନ୍ୟାୟର ଶୋଚନୀୟ ସ୍ଥିତିକୁ ଆଲୋଚନାର ମୁଖ୍ୟସ୍ରୋତ ଭିତରକୁ ଆଣିପାରିଛନ୍ତି। ସେମାନଙ୍କର ନିରବଚ୍ଛିନ୍ନ ଉଦ୍ୟମ ଫଳରେ ସରକାର ଅନେକ ଆଦିବାସୀ ସ୍ୱାର୍ଥ ବିରୋଧୀ ନୀତି ନିୟମକୁ ସମୀକ୍ଷା କରିବା ପାଇଁ ଉତ୍ସାହ ଦେଖାଇଛନ୍ତି।

ମୂଲ୍ୟ ୬୫/-